# ଭାରତ ତୀର୍ଥଦର୍ଶନ ।





ଶ୍ରୀ ମଦନମୋହନ ପଟ୍ଟନାୟକ ।

# ଭାରତ ତୀର୍ଥଦର୍ଶନ ।

ଶ୍ରୀ ମଦନମୋହନ ପଟ୍ଟନାୟକ ।

# ଭାରତ-ତୀର୍ଥଦର୍ଶନ ।

ଦ୍ୱିତୀୟ ଭାଗ ।

ମଧ୍ୟାଞ୍ଚଳ

ଜମୋହନ ପଠନା[redacted]

ଓ

ଜୟପୁର ନିବାସୀ

ଶ୍ରୀ ଦୀନବନ୍ଧୁ ଶତପଥୀଙ୍କ

ଦ୍ୱାରା

ପ୍ରଥମବାର ପ୍ରକାଶିତ



Printed by B. S. Das,
The Mukur Press,
Cuttack,
1926.

ମୂଲ୍ୟ ୫ ୦/୦

# ଭାରତ-ତୀର୍ଥଦର୍ଶନ ।

## ମଧ୍ୟାଞ୍ଚଳ ।

ଆମ୍ଭେମାନେ ସନ ୧୯୨୧ ମସିହା ସେପ୍ଟେମ୍ବର ମାସ ୨୩ ତାରିଖ ଡେନ ପାସେଞ୍ଜରରେ କଟକରୁ ହାଉଡ଼ା ଯାତ୍ରାକଲୁଁ । ଆମ୍ଭ ସଙ୍ଗେ ପୁରୀଜିଲ୍ଲା ଖୋର୍ଦ୍ଧା କିଲ୍ଲା ଅନ୍ତର୍ଗତ ଓହ୍ଲାଣ ଗ୍ରାମନିବାସୀ ମଧୁସୂଦନ ପଟ୍ଟନାୟକ ଓ ଆମ୍ଭର ପାଚକ ଯୋଗ ଦେଇଥିଲେ । ଆମ୍ଭେମାନେ ୨୪ ତାରିଖ ପ୍ରଭାତ ସମୟେ ହାଉଡ଼ାରେ ପ୍ରବେଶହେଲୁଁ । କଟକଠାରୁ ହାଉଡ଼ା ୨୫୪ ମାଇଲ ଦୂର ଅଟେ । ରେଲଭଡ଼ା ଇଣ୍ଟର ଟ ୫୷୵୯ ଓ ଥାର୍ଡ ଟ ୪/ ହିସାବରେ ଦେବାକୁ ହେଲା । ହାଉଡ଼ା ଷ୍ଟେସନ ନିକଟବର୍ତ୍ତୀ ଏକ ଧର୍ମଶାଳାରେ ବିଶ୍ରାମନେଇ ଗଙ୍ଗାସ୍ନାନ ଓ ଭୋଜନାଦି ସମାପନ କରି ରାତ୍ର ୮ଘଣ୍ଟା ସମୟେ ଦିଲ୍ଲୀ ପାସେଞ୍ଜରରେ ଯସିଡ଼ୀହି ଯାତ୍ରାକଲୁଁ । ସେଠାରୁ ଅନ୍ୟ ଏକ ଲାଇନ୍‌ରେ ଯାଇ ତା ୨୫ ରିଖ ପ୍ରାତଃକାଳରେ ଶ୍ରୀ ବୈଦ୍ୟନାଥ ଧାମରେ ପ୍ରବେଶହେଲୁଁ । ହାଉଡ଼ାରୁ ଯସିଡ଼ୀହି ୨୦୯ ମାଇଲ ସେଠାରୁ ବୈଦ୍ୟନାଥ ଧାମ ୪୩ ମାଇଲ ଅଟେ ।

ବୈଦ୍ୟନାଥ—ପୂର୍ବୋତ୍ତରେ ପ୍ରଜ୍ୱଳିକାନିଧାନେ
ସଦା ବସନ୍ତଂ ଗିରିଜାସମେତଂ ।
ସୁରାସୁରାରାଧିତପାଦପଦ୍ମଂ
ଶ୍ରୀ ବୈଦ୍ୟନାଥଂ ତମହଂ ନମାମି ।

ବୈଦ୍ୟନାଥ ଧାମ ସାନ୍ତାଲପ୍ରଗନା ମଧ୍ୟରେ ଅବସ୍ଥିତ । ଏହାର ପ୍ରକାଶ ନାମ ଦେଓଘର । ଶ୍ରୀ ବାବା ବୈଦ୍ୟନାଥ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରେ

ଅନ୍ୟତମ । ଯଥା—"ପରଲ୍ୟାଂ ବୈଦ୍ୟନାଥଞ୍ଚ ଡାକିନ୍ୟାଂ ଭୀମଶଙ୍କରଂ" । ଏହାଙ୍କର ମନ୍ଦିର ଅତି ପ୍ରାଚୀନ କାଳରୁ ବିଦ୍ୟମାନ ଏବଂ ପ୍ରସ୍ତର ପ୍ରାଚୀର ଦ୍ୱାରା ବେଷ୍ଟିତ । ତନ୍ମଧ୍ୟରେ ଅନ୍ନପୂର୍ଣ୍ଣା, କାର୍ତ୍ତିକେୟ, ଗଣେଶ ଓ ଅନ୍ୟାନ୍ୟ ଦେବ ଏବଂ ଦେବୀମାନଙ୍କର ମନ୍ଦିର ଅଛି । ଏହାଙ୍କ ସେବାରେ ଅନେକ ପଣ୍ଡା ନିଯୁକ୍ତ ଅଛନ୍ତି । ସେମାନଙ୍କ ସଂଖ୍ୟା ପ୍ରାୟ ଏକ ହଜାରରୁ ଊର୍ଦ୍ଧ୍ୱ ହେବ । ପ୍ରାଚୀନ ଲେଖା ଖାତା ପ୍ରଦର୍ଶନ ଓ ଅନ୍ୟାନ୍ୟ କୌଶଳରେ ଯାତ୍ରୀମାନଙ୍କୁ କରଗତ କରି ଅତି ବ୍ୟସ୍ତ କରନ୍ତି । ମନ୍ଦିରର ସମ୍ମୁଖରେ ସ୍ୱଚ୍ଛ ଜଳପୂର୍ଣ୍ଣ ଶିବଗଙ୍ଗା ନାମକ ସୁନ୍ଦର ପୁଷ୍କରିଣୀ ବିଦ୍ୟମାନ । ଯାତ୍ରୀମାନେ ଏଥିରେ ସ୍ନାନ କରି ମହାଦେବଙ୍କର ପୂଜା କରନ୍ତି । ଦେବଦେବଙ୍କ ଅଭିଷେକ ନିମିତ୍ତ ଗଙ୍ଗାଜଳ ମନ୍ଦିର ମଧ୍ୟରେ ବିକ୍ରୀ ହୁଏ । ଯାତ୍ରୀମାନେ ରହିବା ସକାଶେ ଭଡ଼ା ଘରମାନ ଅଛି । ଜଳବାୟୁ ସ୍ୱାସ୍ଥ୍ୟକର ହେତୁରୁ ରୋଗାକ୍ରାନ୍ତ ଲୋକମାନେ ଆସି ଏଠାରେ ବାସକରି ଆରୋଗ୍ୟ ଲାଭ କରନ୍ତି । ବିଦେଶାଗତ ଧନାଢ୍ୟ ଲୋକମାନେ ସ୍ୱାସ୍ଥ୍ୟଯୋଗେ ନିବାସ ନିର୍ମାଣ କରି ବାସ କରୁଅଛନ୍ତି । ବାୟୁ ସେବନାର୍ଥେ ଅନେକ ଲୋକଙ୍କର ସମାଗମ ହୁଏ । ଏଠାରେ ଏକ କୋଷ୍ଠାଶ୍ରମ ଅଛି । ଦୁଧ ଓ ଦହି ସୁଲଭ ମୂଲ୍ୟରେ ବିକ୍ରୀ ହୁଏ ।

---

## ପାଟଣା ।

ଆମ୍ଭେମାନେ ସେପ୍ଟେମ୍ବର ୨୫ ତାରିଖ ଅପରାହ୍ଣରେ ବୈଦ୍ୟନାଥ ଠାରୁ ଯସିଡ଼ୀହ ଆସି ସେଠାରୁ ୧୩୭ ମାଇଲ ଦୂରବର୍ତ୍ତୀ ପାଟଣାରେ ସନ୍ଧ୍ୟାକାଳରେ ପ୍ରବେଶହେଲୁଁ । ସେଠାରେ ଆମ୍ଭର ସଙ୍ଗୀ ମଧୁସୂଦନ ପଟ୍ଟନାୟକଙ୍କ ଭ୍ରାତା ବୋର୍ଡ଼ ଅଫିସ କର୍ମଚାରୀ ଗୌରଚରଣ ପଟ୍ଟନାୟକଙ୍କ ଆତିଥ୍ୟ ଗ୍ରହଣ କରି ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିଥିଲୁଁ । ପରଦିବସ ଗଙ୍ଗାସ୍ନାନ କରି ସହରର ପ୍ରଧାନ ପ୍ରଧାନ ସ୍ଥାନମାନ ପରିଦର୍ଶନ କଲୁଁ । ହାଓଡ଼ାରୁ ପାଟଣା ରେଲୱେ ଭଡ଼ା ଇଣ୍ଟର ଟ ୭।୵୩ ଥାର୍ଡ ଟ ୫୵୭ ଦେବାକୁ ହୋଇଥିଲା ।

## ପାଟ୍ନା ।

ପୂର୍ବକାଳରେ ପାଟଣା ପାଟଳିପୁତ୍ର ନାମରେ ଅଭିହିତ ହୋଇ ମଗଧ ଦେଶର ରାଜଧାନୀ ଥିଲା । ଏହାର ଗୌରବ କାଳକ୍ରମେ ବିଲୁପ୍ତପ୍ରାପ୍ତ ହୋଇଥିଲା । ମୁସଲମାନମାନଙ୍କ ରାଜତ୍ୱ ସମୟରୁ ଏଠାରେ ଅନେକ ମୁସଲମାନ ବାସ କଲେ । ଇଂରେଜମାନଙ୍କ ଅଧୀନରେ ଏହା ବିହାର-ପ୍ରଦେଶର ପ୍ରଧାନ ନଗର ହେଲା । ଗଙ୍ଗାଦେବୀ ଏହାର ଉତ୍ତର ଦିଗରେ ପ୍ରବାହିତା । କ୍ରମେ କ୍ରମେ ବାଣିଜ୍ୟ ବ୍ୟବସାୟ ଦ୍ୱାରା ନଗରର ଶ୍ରୀବୃଦ୍ଧି ସାଧିତ ହେଉଅଛି । ସନ ୧୯୧୨ ମସିହାରେ ବଙ୍ଗବିଭାଗରୁ ବିହାର ଓ ଓଡ଼ିଶା ବିଚ୍ଛିନ୍ନ ହୋଇ ଏକତ୍ରେ ବିହାର ଓ ଓଡ଼ିଷା-ବିଭାଗ ନାମ ଧାରଣ କରି ତହିଁର ପାଟଣା ପ୍ରଧାନ ନଗର ହେଲା । ତଦବଧି ଏହି ନଗରୀ ଉତ୍ତରୋତ୍ତର ସମୃଦ୍ଧିଶାଳିନୀ ହେଉଅଛି । ଏଠାରେ ସର୍କାରୀ ଅଫିସମାନ ଓ ହାଇକୋର୍ଟ ସ୍ଥାପିତ ହୋଇଅଛି । ବିହାର ଓଡ଼ିଷା ବିଭାଗର ଗଭର୍ଣ୍ଣର ଓ ହାଇକୋର୍ଟ ଜଜମାନେ ଏ ସ୍ଥାନରେ ବାସକରନ୍ତି । କାଉନସିଲ୍ ହଲ ଓ ସରକାରୀ ଗୃହ ଏବଂ ଅଫିସମାନ ବହୁ ବ୍ୟୟରେ ନିର୍ମାଣ ହୋଇଅଛି । ସରକାର ହାଇକୋର୍ଟ କର୍ମଚାରୀମାନଙ୍କ ସକାଶେ ବାସଭବନ ନିର୍ମାଣ କରି ଦେଇ ସେମାନଙ୍କର ବହୁ ଉପକାର କରି ଅଛନ୍ତି । ମାତ୍ର ଆଗନ୍ତୁକ ବ୍ୟକ୍ତିମାନଙ୍କ ବାସୋପଯୋଗୀ ଭଡ଼ାଘର କିମ୍ବା ଧର୍ମଶାଳା ନାହିଁ । ଏହି ଅଭାବ ସର୍କାରଂ କିମ୍ବା ନାଗରିକ ଧନୀ ବ୍ୟକ୍ତିମାନଙ୍କ ଦ୍ୱାରା ନଗରେ ଯଥାସାଧ୍ୟ ସଙ୍ଗେ ସଙ୍ଗେ ଦୂରହେବା ସମ୍ଭବ । ଖାଦ୍ୟ ଦ୍ରବ୍ୟମାନ ମଧ୍ୟ ସୁଲଭ ମୂଲ୍ୟରେ ବିକାହୁଏ ।

---

## ଗୟା ।

ଆମ୍ଭେମାନେ ପାଟଣାଠାରୁ ୨୨ ତାରିଖରେ ଯାତ୍ରା କରି ସେଠାରୁ ୫୨ ମାଇଲ ଦୂରସ୍ଥିତ ଗୟା କ୍ଷେତ୍ରରେ ଅପରାହ୍ନ ଘ ୪ ଣ୍ଟା ସମୟରେ ପ୍ରବେଶହେଲୁଁ । ଗୟାନଗର ମଧ୍ୟସ୍ଥିତ ଲହ୍ମଣଟୋଲିନିବାସୀ ଜମିଦାର ଶ୍ରୀ ମାଧୋ ପ୍ରସାଦ ସ୍ପେଟସନଠାରୁ ଆମ୍ଭମାନଙ୍କୁ ସାଦରରେ ଅଭ୍ୟର୍ଥନା କରିନେଇ ତାହାଙ୍କ ନିର୍ଦ୍ଦିଷ୍ଟ ଏକ ଦୋତାଲା କୋଠାରେ ରଖାଇଥିଲେ । ତାହାଙ୍କ ଆନୁକୂଲ୍ୟରେ ଆମ୍ଭେମାନେ ଗୟାରେ ୨ ଦିନ

ସୁଖ ସ୍ୱାଚ୍ଛନ୍ଦ୍ୟରେ ବାସକରି ତାହାଙ୍କ ଅନୁମୋଦିତ ପଣ୍ଡା ଓ ବ୍ରାହ୍ମଣଙ୍କ ଦ୍ୱାରା ପିଣ୍ଡଦାନ ଓ ତୀର୍ଥ କାର୍ଯ୍ୟ ଆରମ୍ଭ କଲୁଁ । ପାଟଣାଠାରୁ ଗୟା ରେଲ୍ ଭଡ଼ା ଇଣ୍ଟର ଟ ୧।/୬ ଥାର୍ଡ଼ ଟ ॰ ୴/୩ ପଡ଼ିଲା । ଆମ୍ଭେମାନେ ୨୮ ତାରିଖ ପ୍ରତ୍ୟୁଷେ ସ୍ନାନାଦି ସମାପନ କରି ଫଲ୍ଗୁ ନଦୀ ଓ ବିଷ୍ଣୁ-ପାଦପଦ୍ମରେ ପିଣ୍ଡଦାନ କଲୁଁ । ୨୯ ତାରିଖ ପ୍ରଭାତରେ ଘୋଡ଼ା ଗାଡ଼ି ଦ୍ୱାରା ଯାଇ ପ୍ରେତଶିଳା, ପ୍ରେତକୁଣ୍ଡ, ରାମଶିଳା ଓ ରାମକୁଣ୍ଡରେ ପିଣ୍ଡ-ଦାନ କଲୁଁ । ତତ୍ପରେ ରାମଶିଳା ପାଦ ଦେଶରେ କାକବଳୀ ଦେବାକୁ ହେଲା । ଯିବା ଆସିବା ଗାଡ଼ି ଭଡ଼ା ୪ ଟଙ୍କା ଦେଉଥିଲା । ୩୦ ତାରିଖ ପ୍ରଭାତରେ ଘୋଡ଼ା ଗାଡ଼ି ଦ୍ୱାରା ବୁଦ୍ଧ ଗୟା ଯାଇ ସେଠାରୁ ନିରଞ୍ଜନା ନଦୀର ଅପର ପାର୍ଶ୍ୱସ୍ଥିତ ଧର୍ମାରଣ୍ୟ ଓ ମାତଙ୍ଗ ବାପୀରେ ପିଣ୍ଡ-ଦାନ କଲୁଁ । ତତ୍ପରେ ବୁଦ୍ଧ ଗୟାକୁ ପ୍ରତ୍ୟାଗମନ କରି ବୁଦ୍ଧଦେବଙ୍କ ମନ୍ଦିର ସନ୍ନିକଟ ଅଶ୍ୱତ୍ଥ ବୃକ୍ଷ ମୂଳେ ଜଳଦାନ କଲୁଁ । ଗତାୟାତ ଗାଡ଼ି ଭଡ଼ା ୪ ଟଙ୍କା ପଡ଼ିଲା । ଅକ୍ଟୋବର ମାସ ପହିଲା ତାରିଖରେ ଆମ୍ଭେମାନେ ରାମଗୟା, ସୀତାକୁଣ୍ଡ, ବ୍ରହ୍ମସର ଓ ଅକ୍ଷୟବଟ ମୂଳେ ପିଣ୍ଡଦାନ କଲୁଁ । ପର ଦିବସ ଗାୟତ୍ରୀ ତୀର୍ଥରେ ପିଣ୍ଡଦାନ କରି ଶ୍ରାଦ୍ଧ ସମାପନ କଲୁଁ ।

ପୁଣ୍ୟତୋୟା ଫଲ୍ଗୁନଦୀର ଦକ୍ଷିଣ ତୀରରେ ଗୟା ନଗର ଅବସ୍ଥିତ । ରେଲ୍‌ଷ୍ଟେସନଠାରୁ ଦୁଇ ମାଇଲ୍ ଦୂରରେ ବିଷ୍ଣୁ ପାଦପଦ୍ମ ମନ୍ଦିର ପ୍ରତିଷ୍ଠିତ । ନଗରର ଉତ୍ତର ଦିଗରେ ରାମଶିଳା, ଦକ୍ଷିଣ ଦିଗରେ ବ୍ରହ୍ମଯୋନି, ପଶ୍ଚିମେ ପ୍ରେତଶିଳା ଓ କଟାରୀ ପର୍ବତ ସମୂହ ବିରାଜିତ । ତୀର୍ଥ ସମୂହ ଉକ୍ତ ପର୍ବତମାନଙ୍କ ଉପରେ ଓ ପାଦ ଦେଶରେ ଅଛନ୍ତି ।

ଗୟାସୁରସ୍ତପସ୍ତେପେ ବ୍ରହ୍ମଣା କ୍ରତବେଽର୍ଥିତଃ ।
ପ୍ରାପ୍ତସ୍ୟ ତସ୍ୟ ଶିରସି ଶିଳାଂ ଧର୍ମ୍ମୋଽଭ୍ୟଧାରୟତ୍ । ୪ ।
ତତ୍ର ବ୍ରହ୍ମାକରୋଦ୍ ଯାଗଂ ସ୍ଥିତଶ୍ଚାଦି ଗଦାଧରଃ ।
ଫଲ୍ଗୁତୀର୍ଥାଦିରୂପେଣ ନିଶ୍ଚଳାର୍ଥମହର୍ନିଶଂ । ୫ ।

## ଗୟା ।

ଗୟାପୁରସ୍ୟ ବପେନ୍ଦ୍ର ବ୍ରହ୍ମାଦ୍ୟୈର୍ଦେବତୈଃ ସହ ।
କୃତଯଜ୍ଞୋ ଦଦୌ ବ୍ରହ୍ମା ବ୍ରାହ୍ମଣେଭ୍ୟୋ ଗୃହାଦିକଂ । ୬ ।
ଶ୍ୱେତକଲ୍ପେ ତୁ ବାରାହେ ଗୟୋ ଯାଗମକାରୟତ୍ ।
ଗୟାନାମ୍ନା ଗୟା ଖ୍ୟାତଂ କ୍ଷେତ୍ରଂ ବ୍ରହ୍ମର୍ଷିକାଙ୍କ୍ଷିତଂ । ୭ ।
କାଙ୍କ୍ଷନ୍ତି ପିତରଃ ପୁତ୍ରାନ୍ ନରକାଦ୍ ଭୟଭୀରବଃ ।
ଗୟାଂ ଯାସ୍ୟତି ଯଃ ପୁତ୍ରଃ ସ ନସ୍ତ୍ରାତା ଭବିଷ୍ୟତି । ୮ [illegible]

ବାୟୁ ପୁରାଣାନ୍ତର୍ଗତ ଗୟା ମାହାତ୍ମ୍ୟେ ପ୍ରଥମୋଽଧ୍ୟାୟଃ ।

ତତୋ ଗୟାଂ ସମାସାଦ୍ୟ ବ୍ରହ୍ମଚାରୀ ସମାହିତଃ ।
ଅଶ୍ୱମେଧମବାପ୍ନୋତି କୁଳଞ୍ଚୈବ ସମୁଦ୍ଧରେତ୍ । ୮୨ ।
ତତ୍ରାକ୍ଷୟବଟୋ ନାମ ତ୍ରିଷୁ ଲୋକେଷୁ ବିଶ୍ରୁତଃ ।
ତତ୍ର ଦତ୍ତଂ ପିତୃଭ୍ୟସ୍ତୁ ଭବତ୍ୟକ୍ଷୟମୁଚ୍ୟତେ । ୮୩ ।

ମହାଭାରତ, ବନପର୍ବ୍ବ ୮୪ ଅଧ୍ୟାୟ ।

---

## ୧ । ବିଷ୍ଣୁ ପାଦପଦ୍ମ ମନ୍ଦିର ।

ବିଷ୍ଣୁ ପାଦପଦ୍ମ ଗୟାର ପ୍ରଧାନ ତୀର୍ଥ । ମନ୍ଦିର କୃଷ୍ଣ ପ୍ରସ୍ତର ଦ୍ୱାରା ନିର୍ମ୍ମିତ । ଏହିଁରେ ନାନାବିଧ ଦେବତାମାନଙ୍କ ମୂର୍ତ୍ତି ଖୋଦିତ ହୋଇଅଛି । ତଦ୍ୱାରା ମନ୍ଦିର ପିତୃ ମାତୃଗଣଙ୍କୁ ନିଜ ଅଙ୍ଗରେ ଧାରଣ କଲା ପ୍ରାୟ ଶୋଭା ପାଉଅଛି । ମନ୍ଦିରର ଚୂଡ଼ା ସ୍ୱର୍ଣ୍ଣ ପତ୍ର ଦ୍ୱାରା ବେଷ୍ଟିତ । ରାଣୀ ଅହଲ୍ୟା ବାଈଙ୍କର ଏହା ଏକ ଅକ୍ଷୟ କୀର୍ତ୍ତି । ମନ୍ଦିର ମଧ୍ୟରେ ସୁବିସ୍ତୃତ ପ୍ରସ୍ତର ଖଣ୍ଡ ଉପରେ ରୌପ୍ୟ ନିର୍ମ୍ମିତ ଷୋଡ଼ଶ କୋଣବିଶିଷ୍ଟ କୁଣ୍ଡ ବିଦ୍ୟମାନ ତନ୍ମଧ୍ୟରେ ବିଷ୍ଣୁ ପାଦପଦ୍ମ ବିରାଜିତ । ପୂଜକ ଓ ଯାତ୍ରୀମାନଙ୍କ ପ୍ରଦତ୍ତ ଜଳ, ତୁଳସୀ, ପୁଷ୍ପ, ଦୂର୍ବ୍ବା ଓ ଗୋଧୂମ ଚୂର୍ଣ୍ଣ ନିର୍ମ୍ମିତ ପିଣ୍ଡାଦି ଦ୍ୱାରା ଅନବରତ କୁଣ୍ଡ ପରିପୂର୍ଣ୍ଣ ହେବାରୁ ପାଦପଦ୍ମ ଦୃଷ୍ଟିଗୋଚର ହୁଏ ନାହିଁ ।

ପ୍ରତ୍ୟହ ସନ୍ଧ୍ୟା ସମୟରେ କୁଣ୍ଡସ୍ଥ ଜଳାଦି ନିଷ୍କାସିତ ହୋଇ ପୂଜା ଓ ଆରତୀ ହୁଏ । ସେ ସମୟରେ ପାଦପଦ୍ମ ସ୍ପଷ୍ଟ ଦେଖାଯାଏ । ପଦ୍ମ, ଧ୍ୱଜ, ବଜ୍ର ଅଙ୍କୁଶାଦି ଚିହ୍ନ ପାଦପଦ୍ମରେ ଥିଲା । ପ୍ରତିଦିନ ଘର୍ଷଣ ଦ୍ୱାରା ତାହା କ୍ଷୟ ପ୍ରାପ୍ତ ହୋଇଅଛି । ସେବକମାନେ ସନ୍ଧ୍ୟା ସମୟରେ ପାଦପଦ୍ମୋପରି ଶତାକୃତରେ ଚନ୍ଦନଲେପନ କରନ୍ତି । ଗୟା ତୀର୍ଥ ଗୟାସୁରଙ୍କର ଶିରୋଭାଗରେ ଥିବାରୁ ଏହାକୁ ଶିରୋଗୟା କହନ୍ତି । ଗୟାସୁରଙ୍କ ପ୍ରାର୍ଥନା ମତେ ଶ୍ରୀବିଷ୍ଣୁ ତାହାଙ୍କର ଶିରଃପ୍ରଦେଶରେ ପଦାର୍ପଣ କରିଥିଲେ । ସେହି ପାଦ ପଦ୍ମର ଚିହ୍ନ ଅନାଦି କାଳରୁ ପୂଜା ପାଇ ଆସୁଅଛନ୍ତି । ଏଠାରେ ପିଣ୍ଡଦାନ କଲେ ପିତୃଗଣ ମୁକ୍ତ ହୁଅନ୍ତି ଓ ପିଣ୍ଡଦାତା ପିତୃ-ଋଣରୁ ମୁକ୍ତ ହୁଏ ।

ମନ୍ଦିରର ସମ୍ମୁଖଭାଗର ଏକ ପାର୍ଶ୍ୱରେ ଶତସ୍ତମ୍ଭୋପରି ସ୍ଥାପିତ ଏକ ସୁବୃହତ୍ ମଣ୍ଡପ ଅଛି । କେତେକ ସ୍ତମ୍ଭମାନଙ୍କ ପାଦ ଦେଶରେ ପିଣ୍ଡଦାନ କରିବାର ବିଧି ଅଛି । ମନ୍ଦିରର ଅନତି ଦୂରରେ ଏକ ମନ୍ଦିର ମଧ୍ୟରେ ଶ୍ରୀ ଗଦାଧର ବିରାଜମାନ କରୁଅଛନ୍ତି । ବେଢ଼ା ମଧ୍ୟରେ ଅନ୍ୟାନ୍ୟ ଦେବ ଓ ଦେବୀଙ୍କର ମନ୍ଦିରମାନ ଅଛି ।

ହିନ୍ଦୁଶାସ୍ତ୍ର ମତେ ଗୟାନଗରସ୍ଥିତ ୮୪ ସଂଖ୍ୟକ ତୀର୍ଥରେ ପିଣ୍ଡ-ଦାନ କରି କର୍ତ୍ତବ୍ୟ । ତଦଭାବେ ୪୫ ସଂଖ୍ୟକ ପ୍ରଧାନ ସ୍ଥାନରେ ପିଣ୍ଡ ଦାନ କରି ବିଧେୟ । ସମୟ ଓ ଅର୍ଥାଭାବବଶତଃ ଏହି ସମସ୍ତ ସ୍ଥାନରେ ପିଣ୍ଡଦାନ କରିବାକୁ ଲୋକ ଅକ୍ଷମ ହେଲେ ବିଷ୍ଣୁପାଦପଦ୍ମ, ଫଲ୍‌ଗୁନଦୀ, ଅକ୍ଷୟ ବଟମୂଳେ ପିଣ୍ଡଦାନ କରି ମୋକ୍ଷ ଲାଭ କରିବାର ବିଧି ଅଛି । ଅଧିକାଂଶ ଲୋକେ ଏହି ପନ୍ଥା ଅବଲମ୍ବନ କରନ୍ତି ।

---

## ୨ । ପ୍ରେତଶିଳା ।

ପ୍ରେତଶିଳା ପର୍ବତ ପାଦଦେଶରେ ପ୍ରେତକୁଣ୍ଡ ଅବସ୍ଥିତ । ଏହା ଏକ କ୍ଷୁଦ୍ର ପୁଷ୍କରିଣୀ । ପ୍ରେତଶିଳା ପର୍ବତରୁ ନିର୍ଝରିଣୀ ପ୍ରବାହିତା ହୋଇ କୁଣ୍ଡର ପୁଷ୍ଟି ସାଧନ କରୁଅଛି । ଏଠାରେ ସ୍ନାନ, ତର୍ପଣ ଓ ପିଣ୍ଡଦାନ କରିବାକୁ ହୁଏ । ତଦନନ୍ତର ପର୍ବତାରୋହଣ କରି ଶୀର୍ଷଦେଶସ୍ଥ ଏକ ସ୍ଥାନରେ ପିଣ୍ଡଦାନ ହୁଏ । ବିଷ୍ଣୁପାଦପଦ୍ମ ମନ୍ଦିରଠାରୁ ପ୍ରେତଶିଳା ଚାରି ମାଇଲ ଦୂର ହେବ ।

---

## ୩ । ରାମଶିଳା ।

ରାମଶିଳା ପର୍ବତ ବିଷ୍ଣୁପାଦପଦ୍ମ ମନ୍ଦିରଠାରୁ ତିନମାଇଲ ଦୂରରେ ଅବସ୍ଥିତ । ବନବାସ ସମୟରେ ଶ୍ରୀ ରାମଚନ୍ଦ୍ର ସୀତାଦେବୀ ଓ ଲକ୍ଷ୍ମଣଙ୍କ ସହିତ ଏହି ପର୍ବତରେ ବାସ କରିଥିବାରୁ ଏହାର ନାମ ରାମଶିଳା ହୋଇଅଛି । ଶିଖରିଶିଖରଶୋଭିତ ଏକ ମନ୍ଦିରରେ ଶ୍ରୀରାମ, ସୀତା ଓ ଲକ୍ଷ୍ମଣଙ୍କ ଶ୍ରୀ ବିଗ୍ରହମାନ ଅଛନ୍ତି । ତନ୍ନିକଟରେ ମହର୍ଷିମାନଙ୍କ ମୂର୍ତ୍ତି ସମୂହ ଓ ଅନ୍ୟ ଏକ ମନ୍ଦିରରେ ଶ୍ରୀ ମହାଦେବଙ୍କ ମୂର୍ତ୍ତି ସ୍ଥାପିତ ହୋଇ ଅଛନ୍ତି । ଶିବମନ୍ଦିରର ଦୁଇପାର୍ଶ୍ୱରେ ଦୁଇଗୋଟି କୁଣ୍ଡ ଅଛି । ଏକ କୁଣ୍ଡରୁ ଉଷ୍ଣଜଳ ଅନ୍ୟ କୁଣ୍ଡରୁ ଶୀତଳ ଜଳ ପ୍ରବାହିତ ହୁଏ । ମନ୍ଦିରର ପଶ୍ଚିମ ଦିଗରେ ଏକ ଝରଣା ଅଛି । ପ୍ରଥମେ ପର୍ବତ ପାଦଦେଶସ୍ଥିତ ରାମକୁଣ୍ଡରେ ପିଣ୍ଡଦାନ କରିବାକୁ ହୁଏ । ଅନନ୍ତର ପର୍ବତାରୋହଣ କରି ଶୀର୍ଷଦେଶସ୍ଥିତ ଶ୍ରୀରାମଚନ୍ଦ୍ରଙ୍କ ମନ୍ଦିର ନିକଟରେ ପିଣ୍ଡଦାନ ହୁଏ । ଉପରକୁ ଉଠିବା ସକାଶେ ସୁନ୍ଦର ପାବଚ୍ଛ ଅଛି । ଟିକାରିର ରାଜା ରଣଧୀର ସିଂହ ଉକ୍ତ ପାବଚ୍ଛମାନ ବହୁ ବ୍ୟୟରେ ନିର୍ମାଣ କରାଇ ଯାତ୍ରୀମାନଙ୍କ ଗତାୟାତର ସୁବିଧା କରି ଦେଇଅଛନ୍ତି । ପର୍ବତରୁ ଅବତରଣକରି ତତ୍ପାଦଦେଶସ୍ଥିତ ଏକସ୍ଥାନରେ କାକବଳୀ ଦେବାକୁ ହୁଏ ।

---

## ୪ । ମାତଙ୍ଗ ବାପୀ ।

ବୁଦ୍ଧଗୟା ଗୟାନଗରଠାରୁ ସାତ ମାଇଲ ଦୂରରେ ଅବସ୍ଥିତ । ଏହାର ଦକ୍ଷିଣରେ ନିରଞ୍ଜନା ନଦୀ ପ୍ରବାହିତା । ନଦୀର ଅପର ତୀରରେ ମାତଙ୍ଗ ବାପୀ ଓ ଧର୍ମାରଣ୍ୟ ବିଦ୍ୟମାନ । ଏହି ଦୁଇ ତୀର୍ଥରେ ପିଣ୍ଡଦାନାନନ୍ତର ପ୍ରତ୍ୟାଗମନ କରି ବୁଦ୍ଧଦେବଙ୍କ ବେଢ଼ା ମଧ୍ୟସ୍ଥିତ ମନ୍ଦିର ସଲଗ୍ନ ପିପ୍ପଳ ବୃକ୍ଷମୂଳେ ଜଳଦାନ କରିବାକୁ ହୁଏ ।

---

## ୫ । ସୀତା କୁଣ୍ଡ ।

## ୬ । ରାମ ଗୟା ।

ଫଲ୍‌ଗୁ ନଦୀର ତୀରରେ ବିଷ୍ଣୁପାଦପଦ୍ମ ମନ୍ଦିର । ତାହାର ଅପର ପାରରେ ରାମଗୟା ତୀର୍ଥ ଓ ଫଲ୍‌ଗୁ ନଦୀର ଏକ ପାର୍ଶ୍ୱରେ ସୀତାକୁଣ୍ଡ ଅବସ୍ଥିତ । ସୀତାକୁଣ୍ଡରେ ତର୍ପଣ ଶେଷ କରି ତାହା ନିକଟରୁ ବାଲୁକା ଖନନ ଓ ଜଳ ବାହାର କରି ନିର୍ଗତଜଳ ସହିତ ବାଲୁକା ପିଣ୍ଡ ଦେବାକୁ ହୁଏ । ତଦନନ୍ତର ନଦୀ ତଟସ୍ଥିତ ରାମକୁଣ୍ଡ ଓ ରାମଗୟାରେ ପିଣ୍ଡଦାନ କରାଯାଏ । ଏଠାରେ ଶ୍ରୀରାମଚନ୍ଦ୍ର ଓ ସୀତାଦେବୀଙ୍କ ମୂର୍ତ୍ତିଦ୍ୱୟ ପୂଜା ହେଉଅଛନ୍ତି । ମନ୍ଦିର ମଧ୍ୟରେ କୃଷ୍ଣ ପ୍ରସ୍ତର ନିର୍ମିତ ମଣିବନ୍ଧ ପର୍ଯ୍ୟନ୍ତ ପରିଦୃଶ୍ୟ ଏକ ହସ୍ତ ପ୍ରସାରିତ ହୋଇଅଛି । ହସ୍ତମଧ୍ୟରେ ଗୋଲାକୃତି କୃଷ୍ଣ ପ୍ରସ୍ତର ଖଣ୍ଡ ସ୍ଥାପିତ ହୋଇଅଛି । ସୀତା ଦେବୀ ବାଲୁକା ପିଣ୍ଡଦାନ କରିବା ସମୟରେ ଦଶରଥ ମହାରାଜା କର ପ୍ରସାରଣ କରି ତାହା ଗ୍ରହଣ କରିଥିବା ବୃତ୍ତାନ୍ତ ଏହି ଦୃଶ୍ୟରୁ ପ୍ରକାଶ ହେଉଅଛି ।

---

## ୭। ବ୍ରହ୍ମଯୋନି ପର୍ବତ ।

ଗୟାନଗରର ଏକ ପାର୍ଶ୍ୱରେ ବ୍ରହ୍ମଯୋନି ପର୍ବତ ଅବସ୍ଥିତ । ନଗରର ଚତୁଃପାର୍ଶ୍ୱବର୍ତ୍ତୀ ପର୍ବତମାନଙ୍କ ମଧ୍ୟରେ ଏହା ସର୍ବୋଚ୍ଚ ଅଟେ । ପର୍ବତ ଉପରେ ବ୍ରହ୍ମଯୋନି ଓ ମାତୃଯୋନି ନାମ୍ନୀ ଗୁହାଦ୍ୱୟ ବିଦ୍ୟମାନ । ଗୁହାର ଏକ ପାର୍ଶ୍ୱରେ ପ୍ରବେଶ କରି ଅଭ୍ୟନ୍ତର ଦେଇ ଅନ୍ୟ ପାର୍ଶ୍ୱରେ ବହିର୍ଗତ ହେଲେ ପୁନର୍ଜନ୍ମ ନ ହେବା ବିଶ୍ୱାସରେ ଲୋକମାନେ ଏହିରୂପ କଷ୍ଟସାଧ୍ୟ ଓ ଆପଦସଙ୍କୁଳ କାର୍ଯ୍ୟ କରୁଅଛନ୍ତି । ପର୍ବତ ଶୃଙ୍ଗରେ ଗାୟତ୍ରୀ ସାବିତ୍ରୀ ଓ ସରସ୍ୱତୀ ଦେବୀଙ୍କର ମୂର୍ତ୍ତିତ୍ରୟ ପ୍ରତିଷ୍ଠିତ ହୋଇଅଛନ୍ତି । ପର୍ବତର ଏକ ଦେଶରେ ଗୋଷ୍ପଦାକୃତି ଚିହ୍ନସମୂହ ଦେଖାଯାଏ । ବ୍ରହ୍ମା ଏଠାରେ ଯଜ୍ଞାନୁଷ୍ଠାନ କରି ଗୋଦାନ କରିବା ସମୟରେ ଦାନାର୍ଥେ ଏକତ୍ରିତ ଗୋ ସମୂହଙ୍କର ଏହି ସମସ୍ତ ପଦ-ଚିହ୍ନ ଥିବାର କଥିତ ହୁଏ । ପର୍ବତର ଅନ୍ୟ ଏକସ୍ଥାନରେ ଜାନୁପାତର ଚିହ୍ନ ଅଛି । ମଧ୍ୟମ ପାଣ୍ଡବ ଭୀମସେନ ସେଠାରେ ଜାନୁପାତ କରି ପିଣ୍ଡଦାନ କରିଥିବାରୁ ଜାନୁ ଚିହ୍ନ ରହିଥିବାର କଥିତ ହୁଏ । ପର୍ବତାରୋହଣାର୍ଥେ ପାବଚ୍ଛାବଳୀ ମହାରାଣୀ ଅହଲ୍ୟାବାଈ ନିର୍ମାଣ କରାଇ ଯାତ୍ରୀମାନଙ୍କର ବହୁ ଉପକାର କରିଅଛନ୍ତି ।

---

## ୮। ଅକ୍ଷୟବଟ ।

ବ୍ରହ୍ମଯୋନି ପର୍ବତର ଅନତିଦୂରରେ ଅକ୍ଷୟବଟ ବିଦ୍ୟମାନ । ବିଭିନ୍ନ ତୀର୍ଥମାନଙ୍କରେ ପିଣ୍ଡଦାନ କରି ଶେଷରେ ଅକ୍ଷୟ ବଟମୂଳେ ପିଣ୍ଡଦାନ କରିବାକୁ ହୁଏ । ତତ୍ପରେ ତୀର୍ଥଗୁରୁ ପଣ୍ଡାଙ୍କ ନିକଟରେ ଉପସ୍ଥିତ ହୋଇ ତୀର୍ଥକୃତ-ସମାପ୍ତିସୂଚକ ସୁଫଳ ଗ୍ରହଣ କରାଯାଏ ।

---

## ୧ । ବୁଦ୍ଧଗୟା ।

ଗୟା ସହରଠାରୁ ବୁଦ୍ଧଗୟା ସାତମାଇଲ ଦୂର । ଭଗବାନ୍ ଶାକ୍ୟସିଂହ ଏଠାରେ ତପସ୍ୟା କରିଥିବାରୁ ଏହା ବୌଦ୍ଧମାନଙ୍କର ସୁପ୍ରସିଦ୍ଧ ତୀର୍ଥ । ଦୁଇ ହଜାର ବର୍ଷ ପୂର୍ବେ ବୌଦ୍ଧ ଧର୍ମାବଲମ୍ବୀ ଜନୈକ ରାଜା ମନ୍ଦିର ନିର୍ମାଣ କରି ତନ୍ମଧ୍ୟରେ ବୁଦ୍ଧଦେବଙ୍କର ଧ୍ୟାନମଗ୍ନ ମୂର୍ତ୍ତି ସ୍ଥାପନ କରିଥିଲେ । ମୂର୍ତ୍ତିଙ୍କର ଉଭୟ ପାର୍ଶ୍ୱରେ ମର୍ମ୍ମର ପ୍ରସ୍ତର ନିର୍ମିତ ଅପର ମୂର୍ତ୍ତିଦ୍ୱୟ ଅଛନ୍ତି । ମନ୍ଦିରର ଦକ୍ଷିଣରେ ନିରଞ୍ଜନା ନଦୀ ପ୍ରବାହିତା । ଏହି ନଦୀ ଦକ୍ଷିଣବାହିନୀ ହୋଇ ତିନ ମାଇଲ ଦୂରରେ ମୋହପର୍ବତ ନିଃସୃତା ମୋହନାନଦୀ ସହିତ ମିଳି ଫଲ୍ଗୁ ନାମ ଧାରଣ କରିଅଛି । ପୂର୍ବକାଳରେ ବୁଦ୍ଧଗୟା ଉରୁବିଲ୍ୱ ଗ୍ରାମରେ ଅବସ୍ଥିତ ହୋଇଥିଲା । ଶାକ୍ୟସିଂହଙ୍କ ସ୍ମୃତି ଚିହ୍ନ ସ୍ଥାପନ କରିବା ସକାଶେ ସମ୍ରାଟ ଅଶୋକ ପ୍ରୟାସୀ ହେବାରୁ ଉପଗୁପ୍ତ ତାହାଙ୍କୁ ଶାକ୍ୟସିଂହଙ୍କ ତପସ୍ୟାସ୍ଥାନ ଓ ବୋଧିଦ୍ରୁମ ଦେଖାଇ-ଥିଲେ । ଅଶୋକ ପ୍ରାୟ ଏକଲକ୍ଷ ମୁଦ୍ରା ବ୍ୟୟକରି ସମାଧି ସ୍ଥାନରେ ଏକ ମନ୍ଦିର ଓ ବୋଧିଦ୍ରୁମ ମୂଳସ୍ଥିତ ବୁଦ୍ଧଦେବଙ୍କ ପୀଠ ସ୍ଥାନରେ ବଜ୍ରାସନ ନିର୍ମାଣ କରାଇଥିଲେ । ଚତୁର୍ଥ ଶତାବ୍ଦୀରେ ମନ୍ଦିର ପ୍ରାଙ୍ଗଣ ଓ ବଜ୍ରାସନ ଉପରେ ବାଲୁକା ରାଶିଦ୍ୱାରା ଆଚ୍ଛନ୍ନ ହୋଇଥିଲା । ହିନ୍ଦୁଧର୍ମାବଲମ୍ବୀ ରାଜା ଶଶାଙ୍କ ଦେବ ବୌଦ୍ଧ ଧର୍ମର ମୂଳୋତ୍ପାଟନ କରିବା ମାନସରେ ବୋଧିଦ୍ରୁମର ଶାଖାସମୂହ ଛେଦନ କରାଇଥିଲେ; କିନ୍ତୁ ତାହାଙ୍କ ମନ୍ତ୍ରୀ ପୂର୍ଣ୍ଣବର୍ମ୍ମା କୌଶଳ କ୍ରମେ ମନ୍ଦିର ମଧ୍ୟସ୍ଥିତ ବୁଦ୍ଧ ମୂର୍ତ୍ତିଙ୍କୁ ଓ ବୋଧିଦ୍ରୁମର ମୂଳକୁ ରକ୍ଷା କରିଥିଲେ । ପୂର୍ଣ୍ଣବର୍ମ୍ମା ୬୬ ଖ୍ରୀଷ୍ଟାବ୍ଦରେ ବଜ୍ରାସନକୁ ବାଲୁକା ମଧ୍ୟରୁ ଉଦ୍ଧାରକରି ବୋଧିଦ୍ରୁମର ମୂଳ ରକ୍ଷଣାର୍ଥେ ତାହାର ଚତୁର୍ଦ୍ଦିଗରେ ପ୍ରାଚୀର ନିର୍ମାଣ କରାଇଥିଲେ । ବର୍ତ୍ତମାନ ପରିଲକ୍ଷିତ ବୋଧିଦ୍ରୁମ ପୁରାତନ ମୂଳରୁ

ଶାଖାନ୍ୱିତ ହୋଇ ବୃଦ୍ଧିପ୍ରାପ୍ତ ହୋଇଅଛି କିମ୍ବା ସେହି ସ୍ଥାନରେ ନୂତନ ବୃକ୍ଷ ରୋପିତ ହୋଇଅଛି ବୁଝାଯାଇ ନପାରେ ।

ବୌଦ୍ଧଧର୍ମାବଲମ୍ବୀ ରାଜାମାନଙ୍କର କ୍ଷମତା ହ୍ରାସ ହେବା ସଙ୍ଗେ ସଙ୍ଗେ ବୌଦ୍ଧଧର୍ମ ଅବନତି ପ୍ରାପ୍ତ ହେବାରୁ ବୁଦ୍ଧଦେବଙ୍କ ମନ୍ଦିର କ୍ରମେ କ୍ରମେ ପତନୋନ୍ମୁଖ ହୋଇ ଭଗ୍ନାବସ୍ଥା ପ୍ରାପ୍ତ ହୋଇଥିଲା । ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରହ୍ମଦେଶର ତତ୍କାଳୀନ ରାଜା ମନ୍ଦିର ନିର୍ମାଣାର୍ଥେ ଏକ ବ୍ରହ୍ମବାସୀଙ୍କୁ ପ୍ରେରଣ କରିଥିଲେ । ତାହାଙ୍କ ଦ୍ୱାରା ଏକ ତାମ୍ର ପଟୋପରି ସ୍ୱର୍ଣ୍ଣଜଡ଼ିତ ଛତ୍ର ଶ୍ରୀ ମୂର୍ତ୍ତିଙ୍କ ଉପରେ ସ୍ଥାପିତ ହେବା ବ୍ୟତୀତ ସଂସ୍କାର କାର୍ଯ୍ୟ ବିଶେଷ ଅଗ୍ରସର ହୋଇ ନ ଥିଲା ।

୧୦୭୯ ଖ୍ରୀଷ୍ଟାବ୍ଦରେ ଅନ୍ୟ ଏକ ବ୍ରହ୍ମବାସୀ ପ୍ରେରିତ ହୋଇ ନିର୍ମାଣ କାର୍ଯ୍ୟ ସମାପନ କରିଥିଲେ । ମୁସଲମାନମାନଙ୍କ ରାଜତ୍ୱ ସମୟରେ ମନ୍ଦିର ସମ୍ପୂର୍ଣ୍ଣରୂପେ ପରିତ୍ୟକ୍ତ ହେବାରୁ ପୁନଶ୍ଚ ଜୀର୍ଣ୍ଣାବସ୍ଥା ପ୍ରାପ୍ତ ହେଲା । ୧୮୬୭ ଖ୍ରୀଷ୍ଟାବ୍ଦରେ ବ୍ରହ୍ମଦେଶର ରାଜା ଜୀର୍ଣ୍ଣ ସଂସ୍କାରାର୍ଥେ କେତେକ ବ୍ରହ୍ମବାସୀମାନଙ୍କୁ ପ୍ରେରଣ କରିଥିଲେ । କିନ୍ତୁ ସେମାନେ ନିଜୋଦ୍ୟମରେ ସଂସ୍କାର କାର୍ଯ୍ୟ କରିବାକୁ ଅକ୍ଷମ ହୋଇ ବଙ୍ଗ ଦେଶର ତତ୍କାଳୀନ ଶାସନକର୍ତ୍ତା ସର ଆଁଶଲି ଇଡ଼େନଙ୍କର ସାହାଯ୍ୟ ପ୍ରାର୍ଥନା କରିବାରୁ ତାହାଙ୍କ ଆଦେଶ ମତେ ଅଧୀନସ୍ଥ କର୍ମଚାରୀମାନଙ୍କ ସାହାଯ୍ୟରେ ୧୮୮୦ ଖ୍ରୀଷ୍ଟାବ୍ଦରେ ସଂସ୍କାର କାର୍ଯ୍ୟ ଶେଷ ହୋଇଥିଲା ।

ମନ୍ଦିରର ଉଚ୍ଚତା ୧୧୦ ହାତ ହେବ । ବର୍ତ୍ତମାନ ଏହା ହିନ୍ଦୁମାନଙ୍କର ତତ୍ତ୍ୱାବଧାନରେ ଅଛି । ବୌଦ୍ଧଧର୍ମ ହିନ୍ଦୁଧର୍ମଠାରୁ ଭିନ୍ନ ଥିବାର ବିଶ୍ୱାସ ହିନ୍ଦୁମାନେ ସେମାନଙ୍କ ହୃଦୟରେ ପୋଷଣ କରି ଆସୁଅଛନ୍ତି । କିନ୍ତୁ ପୁରୁଷୋତ୍ତମ କ୍ଷେତ୍ରରେ ବିରାଜମାନ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ବେଢ଼ାମଧ୍ୟସ୍ଥିତ ସୂର୍ଯ୍ୟଦେବଙ୍କ ମନ୍ଦିରରେ ଓ ନିକଟବର୍ତ୍ତୀ ସ୍ଥାନରେ ବୁଦ୍ଧଦେବଙ୍କର ମୂର୍ତ୍ତି ଅଛନ୍ତି । ଜାତି ନିର୍ବିଶେଷରେ ଜଗନ୍ନାଥଙ୍କ

ମହାପ୍ରସାଦ ସେବନ ବୌଦ୍ଧ ଧର୍ମାନୁସାରେ ପ୍ରଚଳିତ ହୋଇଥିବାର କେତେକ ଲୋକ ମତ ପ୍ରକାଶ କରନ୍ତି । ବୁଦ୍ଧଦେବ ଶ୍ରୀ ବିଷ୍ଣୁଙ୍କର ଅବତାର ଥିବା ଶାସ୍ତ୍ରାନୁମୋଦିତ ଅଟେ । ନିମ୍ନୋକ୍ତ ଶ୍ଳୋକାନୁସାରେ ବୁଦ୍ଧଦେବ କୀକଟ ଅର୍ଥାତ୍ ଗୟା ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ ଓ ସେ ହିନ୍ଦୁମାନଙ୍କର ଉପାସ୍ୟଦେବ ଅଟନ୍ତି ।

ତତଃ କଲୌ ସଂପ୍ରବୃତ୍ତେ ସମ୍ମୋହାୟ ସୁରଦ୍ୱିଷାଂ,
ବୁଦ୍ଧୋ ନାମ୍ନାଞ୍ଜନସୁତଃ କୀକଟେଷୁ ଭବିଷ୍ୟତି । ୨୪ ।

ଶ୍ରୀ ମଦ୍ଭାଗବତ, ପ୍ରଥମସ୍କନ୍ଧ, ତୃତୀୟ ଅଧ୍ୟାୟ ।

ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ ସଦୟ ହୃଦୟ ଦର୍ଶିତପଶୁଘାତଂ ।
କେଶବ ଧୃତ ବୁଦ୍ଧ ଶରୀର, ଜୟ ଜଗଦୀଶ ହରେ । ୯ ।

ଶ୍ରୀ ଗୀତଗୋବିନ୍ଦ ପ୍ରଥମ ସର୍ଗ ।

ଉପରୋକ୍ତ ପାଣ୍ଡାବାକ୍ୟାନୁସାରେ ବୋଧି ଦ୍ରୁମ ମୂଳେ ଜଳ ଦାନର ବ୍ୟବସ୍ଥା ହୋଇଅଛି । ମନ୍ଦିର ମଧ୍ୟରେ ମାୟାଦେବୀଙ୍କର ମୂର୍ତ୍ତି ଅଛନ୍ତି । ମନ୍ଦିର ଗାତ୍ରରେ ବୁଦ୍ଧଦେବଙ୍କର କ୍ଷୁଦ୍ର କ୍ଷୁଦ୍ର ମୂର୍ତ୍ତିମାନ ଖୋଦିତ ହୋଇଅଛି ।

ମନ୍ଦିରର ଏକ ପାର୍ଶ୍ୱରେ ଅନ୍ୟ ଏକ ମଠ ଅଛି । ତନ୍ନିକଟବର୍ତ୍ତୀ ଉଚ୍ଚଭୂମି ଉପରେ କେତେକ ମନ୍ଦିର ମଧ୍ୟରେ ଶ୍ରୀ ଜଗନ୍ନାଥ, ଶ୍ରୀ ରାମଚନ୍ଦ୍ର ଓ ଶିବଲିଙ୍ଗ ପ୍ରତିଷ୍ଠିତ ହୋଇଅଛନ୍ତି । ଏହାର ଅନତିଦୂରରେ ବରାବର ନାମକ ପର୍ବତ ଉପରେ ସିଦ୍ଧେଶ୍ୱର ମହାଦେବଙ୍କର ମନ୍ଦିର ଅଛି । ଏହା ଏକ ପ୍ରାଚୀନ ମନ୍ଦିର । ଏହି ଲିଙ୍ଗ ବାଣାସୁରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାର କଥିତ ହୁଏ । ଶିବରାତ୍ରିକାଳରେ ଏଠାରେ ଏକ ମେଳା ହୁଏ । ତହିଁରେ ଅନେକ ଯାତ୍ରୀ ଯୋଗଦାନ କରନ୍ତି ।

## କଶୀ ।

ବୁଦ୍ଧଦେବଙ୍କ ମନ୍ଦିରର ଦକ୍ଷିଣରେ ଏକ ପୁରାତନ ପୁଷ୍କରିଣୀ ଅଛି । ମନ୍ଦିରର ଚତୁର୍ଦ୍ଦିଗରେ ଭିନ୍ନ ଭିନ୍ନ ମୂର୍ତ୍ତିସମୂହ ସ୍ଥାପିତ ହୋଇଅଛନ୍ତି । ନାନାସ୍ଥାନରେ ମନ୍ଦିରର ଧ୍ୱଂସାବଶେଷ ଦୃଷ୍ଟିଗୋଚର ହୁଏ । ନିକଟରେ ଦଣ୍ଡାୟମାନ ସୁନ୍ଦର ଓ ବୃହଦାକାର ଶିଳ୍ପ ସ୍ତମ୍ଭ ଅବଲୋକନ କଲେ ଭାରତ-ବାସିମାନେ ଶିଳ୍ପ ନିର୍ମାଣ କାର୍ଯ୍ୟରେ ନିପୁଣ ଥିବାର ପ୍ରତୀତ ହେବ ।

## ବାରାଣସୀ ବା କାଶୀ କ୍ଷେତ୍ର ।

ପଦ୍ମପୁରାଣ, ପାତାଳଖଣ୍ଡ, କାଶୀମାହାତ୍ମ୍ୟ ଅଷ୍ଟମାଧ୍ୟାୟ ।

ଗୁରୁରୁବାଚ—ପରମାଣସ୍ତୁ କ୍ଷେତ୍ରାଣି ତନ୍ନିବୋଧତ ସତ୍ତମାଃ ।
ମଧ୍ୟମେଶ୍ୱରମାରଭ୍ୟ ଯାବତ୍ ଦେହଳିବପୁଂ । ୫୫ ।
ସୂତ୍ରଂ ସ୍ଥାପ୍ୟ ଚତୁର୍ଦ୍ଦିକ୍ଷୁ ଭ୍ରାମୟେନ୍ମଣ୍ଡଳାକୃତି ।
ତତ୍ର ଯା ଜାୟତେ ରେଖା ତନ୍ମଧ୍ୟେ କ୍ଷେତ୍ରମୁତ୍ତମଂ । ୫୬ ।
କାଶୀତି ଯତ୍ର ବହୁବେଦାନ୍ତତ୍ର ମୁକ୍ତିଃ ପ୍ରତିଷ୍ଠିତା । ୫୭ ।
କାଶ୍ୟନ୍ତଃ ପରମଂ କ୍ଷେତ୍ରଂ ବିଶେଷଫଳସାଧନଂ ।
ବାରାଣସୀତି ଯତ୍ର ଖ୍ୟାତଂ ତନ୍ମାନଂ ନିଗଦାମି ବଃ । ୫୮ ।
ଦକ୍ଷିଣୋତ୍ତରୟୋର୍ନଦ୍ୟୌ ବରଣାସୀ ଚ ପୂର୍ବତଃ ।
ଜାହ୍ନବୀ ପଶ୍ଚିମେ ଚାପି ପାଶପାଣିର୍ଗଣେଶ୍ୱରଃ । ୫୯ ।
ତସ୍ୟା ଅନ୍ତଃ ସ୍ଥିତଂ ଦିବ୍ୟଂ ବିଶେଷଫଳସାଧନଂ ।
ଅବିମୁକ୍ତମିତି ଖ୍ୟାତନ୍ତନ୍ମାନଂ ଚ ବ୍ରବୀମି ବଃ । ୬୦ ।
ବିଶ୍ୱେଶ୍ୱରାଚ୍ଚତୁର୍ଦ୍ଦିକ୍ଷୁ ଧନୂଃ ଶତଦ୍ୱୟାନ୍ୱିତଂ ।
ଅବିମୁକ୍ତାବଧିଂ କ୍ଷେତ୍ରଂ ମୁକ୍ତିସ୍ତତ୍ର ନ ସଂଶୟଃ । ୬୧ ।
ଗୋକର୍ଣ୍ଣେଶଃ ପଶ୍ଚିମେ ପୂର୍ବତସ୍ତୁ ଗଙ୍ଗା ମଧ୍ୟସ୍ରୋତରେ ଭାରଭୂତଃ ।
ବ୍ରହ୍ମେଶାନୋ ଦକ୍ଷିଣେ ସର୍ବ୍ବମସ୍ମାତ୍ପ୍ରୋକ୍ତଂ ଭୁବନଂ ବନ୍ଧବର୍ଜ୍ଜ୍ୟଂ । ୬୨ ।

କାଶ୍ୟାମନ୍ତସ୍ତୁ ସାଲୋକ୍ୟଂ ସାକ୍ଷାତ୍ ପ୍ରାପ୍ନୋତି ସନ୍ନ୍ୟମାଃ ।
ତତଃ ସ୍ୱରୂପତାଂ ଯାତି ତତଃ ସାନ୍ନିଧ୍ୟମଶ୍ନୁତେ ।୨୫ ।

ଭକ୍ତବତ୍ସଳ ଦେବଦେବ ଶ୍ରୀ ମହାଦେବଙ୍କ ଦ୍ୱାରା କାଶୀଧାମ ବିମୁକ୍ତ ନ ହେବାରୁ କାଶୀକ୍ଷେତ୍ର ଅବିମୁକ୍ତ ନାମରେ ଅଭିହିତ । ଯଥା :—

ଆନନ୍ଦକାନନଂ ତଦ୍ଧି ଶଙ୍କରସ୍ୟାତି ବଲ୍ଲଭଂ ।
ନ ବିମୁକ୍ତଂ ବିଶ୍ୱାତ୍ମା ଅବିମୁକ୍ତଂ ତତଃ ସ୍ମୃତଂ ।୪୩ ।

କାଶୀମାହାତ୍ମ୍ୟ ଦ୍ୱିତୀୟାଧ୍ୟାୟ ।

ସନ ୧୯୨୧ ମସିହା ଅକ୍ଟୋବରମାସ ୩ ତାରିଖ ରାତ୍ରି ତିନିଘଣ୍ଟା ସମୟରେ ଆମ୍ଭେମାନେ ଗୟାରୁ କାଶୀଧାମାଭିମୁଖେ ଯାତ୍ରାକଲୁଁ । ଗୟାରୁ କାଶୀ ୧୩୬ ମାଇଲ ଦୂର । ରେଲଭଡ଼ା ଇଣ୍ଟର ଟ ୩ । ଓ ଥାର୍ଡ ଟ ।୵ ହିସାବେ ଦେବାକୁ ହେଲା । ଷ୍ଟେସନଠାରୁ ଘୋଡ଼ା ଗାଡ଼ିରେ ସହର ମଧ୍ୟରେ ପ୍ରବେଶ କରି ତତ୍ରସ୍ଥ ସଂସ୍କୃତ କଲେଜର ଅଧ୍ୟାପକ ଯାଜପୁରନିବାସୀ ଶ୍ରୀକର ଶାସ୍ତ୍ରୀଙ୍କ ସହିତ ସାକ୍ଷାତ୍ କରି ତାହାଙ୍କ ନିରୂପିତ ଗୃହରେ ଦୈନିକ ଏକଟଙ୍କା ଭଡ଼ା ଦେଇ ରହିଲୁଁ । ସନ୍ଧ୍ୟାସମୟେ ଶ୍ରୀବିଶ୍ୱନାଥଙ୍କର ଆରତି ଦର୍ଶନ ଲାଭ ହେଲା ।

ଭାରତବର୍ଷ ମଧ୍ୟରେ କାଶୀ ସୁପ୍ରସିଦ୍ଧ ଶିବକ୍ଷେତ୍ର । ଶ୍ରୀବିଶ୍ୱନାଥ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରେ ଅନ୍ୟତମ । ( ବାରାଣସ୍ୟାଂତୁ ବିଶ୍ୱେଶଂ ତ୍ର୍ୟମ୍ବକଂ ଗୌତମୀ ତଟେ ) କାଶୀନଗର ଗଙ୍ଗାନଦୀଙ୍କର ପଶ୍ଚିମ ତୀରରେ ଅବସ୍ଥିତ । ଏହାର ଦୈର୍ଘ୍ୟ ପୂର୍ବ-ପଶ୍ଚିମରେ ଚାରି କୋଶ ଓ ପ୍ରସ୍ଥ ଉତ୍ତର ଦକ୍ଷିଣରେ ଦୁଇ କୋଶ । ନଗରର ଦକ୍ଷିଣ ଦିଗରେ ବରୁଣା ଓ ଉତ୍ତର ଦିଗରେ ଅସୀନାମଧାରିଣୀ ନଦୀଦ୍ୱୟ ପ୍ରବାହିତ । ସେ ହେତୁ ନଗରର ନାମ ବାରାଣସୀ ହୋଇଅଛି । କାଶୀ ନାମକ ଜଣୈକ ରାଜା ଏଠାରେ ପ୍ରଥମେ ନଗର ନିର୍ମାଣ କରି ରାଜଧାନୀ ସ୍ଥାପନ କରିଥିବାରୁ ଏହାର ଅପର ନାମ

କାଶୀ ହୋଇଅଛି । ନଗର ଓ ତଦନ୍ତର୍ଭୁକ୍ତ ଦେବ ମନ୍ଦିର ହିନ୍ଦୁ ପୂର୍ବକାଳରୁ ପ୍ରତିଷ୍ଠିତ ହୋଇଅଛି । ଶ୍ରୀ ବିଶ୍ୱନାଥଦେବଙ୍କ ପୁରାତନ ମନ୍ଦିର ସମ୍ରାଟ ଆରଙ୍ଗଜେବଙ୍କ ଆଦେଶକ୍ରମେ ଭଗ୍ନହୋଇ ତଦୁପକରଣ ଦ୍ୱାରା ସେହି ସ୍ଥାନରେ ଏକ ମସ୍ଜିଦ୍ ନିର୍ମାଣ ହୋଇଅଛି । ମସ୍ଜିଦର ପଶ୍ଚିମସ୍ଥ ନାନାବିଧ କାରୁକାର୍ଯ୍ୟ ବିମଣ୍ଡିତ ମନ୍ଦିରର ଏକପାର୍ଶ୍ୱ ଥିବାର ସ୍ପଷ୍ଟ ଦେଖାଯାଉଅଛି । ପୁରାତନ ମନ୍ଦିର ସମ୍ମୁଖୋପବିଷ୍ଟ ନନ୍ଦୀ ବୃଷଭ ସ୍ଥାନାନ୍ତରିତ ହୋଇ ନ ଥିବାରୁ ଅଦ୍ୟାବଧି ମସ୍ଜିଦ୍‌ଟିକୁ ମୁଖ କରି ରହି ଅଛନ୍ତି । ବୃଷଭଙ୍କ ସନ୍ନିକଟରେ ଜ୍ଞାନବାପୀ ନାମଧେୟ କୂପ ବିଦ୍ୟମାନ । ଏହାର ମୁଖ କାଷ୍ଠଫଳକ ଦ୍ୱାରା ଆବୃତ ହୋଇଅଛି । ଏକପାର୍ଶ୍ୱରେ ଜଳ ଉତ୍ତୋଳନାର୍ଥେ ଏକହାତ ପରିମିତ ଏକ ଛିଦ୍ର ଅଛି । ଜ୍ଞାନବାପୀ ଶ୍ରୀ ବିଶ୍ୱନାଥ ଦେବଙ୍କ ଦ୍ୱାରା ଖୋଦିତ ହୋଇଥିବା ଓ ତନ୍ମଧ୍ୟର ଜଳପାନକରି ଅଜ୍ଞାନ ଜ୍ଞାନ ଲାଭ କରିବାର ବିଶ୍ୱାସ ଚଳି ଆସୁଅଛି । କଳାପାହାଡ଼ କାଶୀନଗର ଧ୍ୱଂସ କରିବା ସମୟେ ଶ୍ରୀବିଶ୍ୱନାଥ ଜ୍ଞାନବାପୀରେ ପ୍ରବେଶ କରି ଅନ୍ତର୍ହିତ ହୋଇଥିଲେ । କୂପ ଯାତ୍ରୀମାନଙ୍କ ଦ୍ୱାରା ନାନୋପହାର ସହିତ ପୂଜିତ ହେଉଅଛି । କୂପର ଉପରିଭାଗ ଏକ ଛାତ ଦ୍ୱାରା ଆବୃତ । ପଣ୍ଡାମାନେ ଉକ୍ତ ମଣ୍ଡପରେ ଉପବେଶନ କରି ଯାତ୍ରୀମାନଙ୍କୁ କୂପୋଦକ ଦେଇ ଦକ୍ଷିଣା ଗ୍ରହଣ କରନ୍ତି ।

ଶ୍ରୀ ବିଶ୍ୱେଶ୍ୱରଙ୍କର ନୂତନ ମନ୍ଦିର ଜ୍ଞାନବାପୀ ନିକଟରେ ନିର୍ମାଣ ହୋଇଅଛି । ମନ୍ଦିରର ଗଠନ ପ୍ରଣାଳୀ ଅତି ମନୋହର ଅଟେ । କେଉଁ ମହାତ୍ମା ଏହାର ନିର୍ମାତା ନିର୍ଣ୍ଣୟ କରିବା କଠିନ । ମହାରାଜା ରଣଜିତ୍‌ସିଂହଙ୍କ ଦ୍ୱାରା ମନ୍ଦିରର ଚୂଡ଼ା ଓ କଳଶାଦି ତାମ୍ରପତ୍ରାବୃତ ହୋଇ ତଦୁପରି ସୁବର୍ଣ୍ଣ ଜଡ଼ିତ ହୋଇଥିଲା । କପାଟ ଓ ଚଉକାଠ ରଜତ ପତ୍ର ଦ୍ୱାରା ଆଚ୍ଛାଦିତ ହୋଇ ତନ୍ମଧ୍ୟରେ ନାନାବିଧ ଲତା, ପୁଷ୍ପ ଓ ମୂର୍ତ୍ତିସମୂହ ଖୋଦିତ ହୋଇଅଛି ।

ଶ୍ରୀବିଶ୍ୱେଶ୍ୱରଙ୍କର ଲିଙ୍ଗ ମୂର୍ତ୍ତି କ୍ଷୁଦ୍ରାକାର । ସେବକ ଓ ଯାତ୍ରୀମାନଙ୍କ ପ୍ରଦତ୍ତ ପୁଷ୍ପ ଓ ବିଲ୍ୱପତ୍ରାଦି ପୂଜୋପକରଣ ଦ୍ୱାରା ଅନବରତ ଆଚ୍ଛନ୍ନ ହୋଇଥିବାର ଦେଖାଯାଏ । ପ୍ରତ୍ୟହ ପ୍ରାତଃ ଓ ସନ୍ଧ୍ୟାରେ ଉପକରଣ ସମସ୍ତ ବହିଷ୍କୃତ ହୋଇ ଶ୍ରୀଲିଙ୍ଗ ମୂର୍ତ୍ତିଙ୍କର ଦର୍ଶନ ଲଭନ୍ତୁଏ ।

" ପ୍ରତ୍ୟହ ସନ୍ଧ୍ୟାର ଅବ୍ୟବହିତ ପରେ ଶ୍ରୀଦେବଦେବଙ୍କର ଆରତିର ଦୃଶ୍ୟ ଅତୀବ ମନୋହର । ଭକ୍ତବୃନ୍ଦ ମନ୍ଦିର ଚତୁଃପାର୍ଶ୍ୱସ୍ଥ ଦ୍ୱାର ଚତୁଷ୍ଟୟ ସମ୍ମୁଖରେ ଓ ତଦୁପରିସ୍ଥିତ ପ୍ରକୋଷ୍ଠରେ ଦଣ୍ଡାୟମାନ ହୋଇ ସତୃଷ୍ଣ ନୟନରେ ଶ୍ରୀବିଗ୍ରହଙ୍କୁ ଦର୍ଶନ କରନ୍ତି । ଶକ୍ତି ଅର୍ଥାତ୍ କୁଣ୍ଡ ପରିଷ୍କାର ହୋଇ ଶ୍ରୀବିଗ୍ରହ ଦୃଷ୍ଟିଗୋଚର ହେଲେ ସେବକବୃନ୍ଦ ତଦୁପରି ପୁଷ୍ପ ଓ ବିଲ୍ୱପତ୍ର ମାଳ, ଚୂଳ, ସୁବର୍ଣ୍ଣଜରିଜଡ଼ିତ ବସ୍ତ୍ରାଦି ଓ ମୁକୁଟ ଉପର୍ଯ୍ୟୁପରି ସଂସ୍ଥାପିତ କରନ୍ତି । ତତ୍ପରେ ଏକାଦଶ ସଂଖ୍ୟକ ବ୍ରାହ୍ମଣ ସେବକ ପ୍ରତ୍ୟେକେ ବାମ ହସ୍ତରେ ଘଣ୍ଟା ଓ ଦକ୍ଷିଣ ହସ୍ତରେ ଆରତିର ଆଧାର ସହିତ କୁଣ୍ଡକୁ ବେଷ୍ଟନ କରି ଉପବେଶନ କରନ୍ତି । ହସ୍ତର ଘଣ୍ଟା ଧ୍ୱନି ଓ ମୁଖରୁ ବେଦଧ୍ୱନି ଏକ ତାନରେ ଉଦ୍ଗତ ହୋଇ ତତ୍ସଙ୍ଗେ ଦକ୍ଷିଣ ହସ୍ତସ୍ଥିତ ପ୍ରଜ୍ୱଳିତ ଆରତି ପରିଚାଳିତ ହୁଏ । ମନ୍ଦିର ସମ୍ମୁଖରେ ସୁମଧୁର ବାଦ୍ୟ ଓ ଘଣ୍ଟାଧ୍ୱନି ହେଉଥାଏ । ଦର୍ଶକ ଭକ୍ତବୃନ୍ଦ ପୃଥକ୍ ପୃଥକ୍ ସ୍ୱରରେ ସ୍ତୁତି ପାଠ କରନ୍ତି । ସମସ୍ତ ଧ୍ୱନିର ଏକତ୍ର ମିଳନରେ ଏକ ଅପୂର୍ବସ୍ୱର ନିର୍ଗତ ହୋଇ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ କରେ । ପ୍ରାୟ ଏକ ଘଣ୍ଟା କାଳ ଏହିରୂପ ଚଳେ ।

ଶ୍ରୀ ବିଶ୍ୱେଶ୍ୱର ମନ୍ଦିର ନିକଟରେ ଅନ୍ନପୂର୍ଣ୍ଣା ଭଗବତୀଙ୍କର ମନ୍ଦିର । ଗର୍ଭ ଗୃହରେ ରତ୍ନଜଡ଼ିତ ସ୍ୱର୍ଣ୍ଣାଳଙ୍କାର ବିଭୂଷିତା ଶ୍ରୀ ଦୁର୍ଗାଦେବୀ ଦର୍ବିହସ୍ତେ ଦଣ୍ଡାୟମାନା । ମନ୍ଦିର ସମ୍ମୁଖସ୍ଥିତ ଏକ ବୃହତ୍ ପ୍ରାଙ୍ଗଣରେ ବ୍ରାହ୍ମଣ ଭକ୍ତବୃନ୍ଦଙ୍କ ମଧ୍ୟରୁ କେତେକ ଚଣ୍ଡୀପାଠ ଓ କେତେକ ଧ୍ୟାନମଗ୍ନାବସ୍ଥାରେ ଉପବିଷ୍ଟ ହୋଇ ଥିବାର ଦେଖାଯାଏ । ସନ ୧୭୮୧

ମହିଦ୍ୱାରେ ବାଜୀରାଓ ପେଶୱା ଉକ୍ତ ମନ୍ଦିର ନିର୍ମାଣକରାଇଥିଲେ । ଏହାର ଏକ ପାର୍ଶ୍ୱରେ ସପ୍ତାଶ୍ୱବାହନଯୁକ୍ତ ରଥୋପରେ ସୂର୍ଯ୍ୟଦେବ ବିରାଜମାନ କରୁଅଛନ୍ତି । ବେଢ଼ା ମଧ୍ୟସ୍ଥିତ କ୍ଷୁଦ୍ର ମନ୍ଦିରମାନଙ୍କରେ ଅନ୍ୟ ମୂର୍ତ୍ତିସମୂହ ପ୍ରତିଷ୍ଠିତ ହୋଇଅଛନ୍ତି ।

ଶ୍ରୀ ଅନ୍ନପୂର୍ଣ୍ଣା ଦେବୀଙ୍କ ବେଢ଼ାସଂଲଗ୍ନ ରାସ୍ତା ପ୍ରାନ୍ତଭାଗରେ ଶ୍ରୀ ଢୁଣ୍ଢି-ଗଣେଶ ବିରାଜମାନ କରୁଅଛନ୍ତି । ଉକ୍ତ ରାସ୍ତା ପାର୍ଶ୍ୱରେ ଅନ୍ୟାନ୍ୟ ଦେବଦେବୀଙ୍କର ମନ୍ଦିରମାନ ଦେଖାଯାଏ । ଢୁଣ୍ଢିଗଣେଶଙ୍କ ପୂଜା ବ୍ୟତୀତ ଶ୍ରୀ ବିଶ୍ୱନାଥଙ୍କ ଦର୍ଶନରେ ଫଳଲାଭ ହୁଏନାହିଁ । ଢୁଣ୍ଢିଗଣେଶ ବନ୍ଦନର ସୁପ୍ରତିଷ୍ଠିତ ପାର୍ଶ୍ୱଦେବତା । ନିରନ୍ତର ନିଖିଳ ପଦାର୍ଥାନ୍ୱେଷଣରେ ତତ୍ପରଥିବାରୁ ତାଙ୍କର ନାମ ଢୁଣ୍ଢିରୂପେ ଖ୍ୟାତ ରହିଅଛି । ଏ ବିଷୟରେ ପ୍ରାଚୀନୋକ୍ତି ଅଛି । ଯଥା :—

ଅନ୍ୱେଷଣେ ଢୁଣ୍ଢିରୟଂ ପ୍ରଥିତୋଽସ୍ତି ଧାତୁଃ
ସର୍ବାର୍ଥଢୁଣ୍ଢିତତୟା ତବ ଢୁଣ୍ଢିନାମ ।
କାଶୀପ୍ରବେଶମପି କୋ ଲଭତେଽତ୍ର ଦେହୀ
ତୋଷଂ ବିନା ତବ ବିନାୟକ ! ଢୁଣ୍ଢିରାଜ !

ମସଜିଦ୍ ନିକଟରେ କାଶୀକରବଟ ନାମକ ଏକ କୂପ ଅଛି । କୂପରେ ଡୁବି ବାହାରିଲେ ପୁନର୍ଜନ୍ମ ନ ହେବା ବିଶ୍ୱାସରେ ଲୋକମାନେ ତହିଁରେ ବୁଡ଼ୁଥିଲେ, କିନ୍ତୁ ଏକ ଜଣ ବୁଢ଼ା ମୃତ୍ୟୁମୁଖରେ ପତିତହେବାରୁ ସରକାରବାହାଦୁରଙ୍କ ଆଦେଶକ୍ରମେ କୂପମୁଖ ବନ୍ଦ ହେଲା । ପ୍ରତ୍ୟେକ ସପ୍ତାହ ସୋମବାର ଦିନ କୂପର ମୁଖ ଏକବାର ଖୋଲା ହୁଏ ।

ଶ୍ରୀ କାଳଭୈରବଙ୍କ ମନ୍ଦିର ବିଶ୍ୱନାଥଙ୍କ ମନ୍ଦିରଠାରୁ ଏକ ମାଇଲ ଦୂର । ଶ୍ରୀ ବିଗ୍ରହ ନୀଳ ପ୍ରସ୍ତରରେ ନିର୍ମିତ ଓ ଚତୁର୍ଭୁଜ ରଜତପଟ୍ଟ-ଜଡ଼ିତ ହୋଇଅଛି । ତାହାଙ୍କ ବାହନ ସାରମେୟ ନିକଟରେ

ରହିଅଛନ୍ତି । କାଳଭୈରବ କାଶୀର କ୍ଷେତ୍ରପାଳ ଅଟନ୍ତି ଓ କ୍ଷେତ୍ର ମଧ୍ୟରେ କୌଣସି ଲୋକ ପାପାଚରଣ କଲେ ତାହାକୁ ଯମଦଣ୍ଡାପେକ୍ଷା କଠୋର ଦଣ୍ଡରେ ଦଣ୍ଡିତ କରନ୍ତି । ପୁନାର ରାଜା ବାଜିରାଓଙ୍କ ଦ୍ୱାରା ଏହି ମନ୍ଦିର ନିର୍ମାଣ ହୋଇଥିଲା । ମନ୍ଦିର ନିକଟବର୍ତ୍ତୀ ଏକ ମନ୍ଦିରରେ ଶୀତଳା ଦେବୀ ସପ୍ତଭଗ୍ନୀରୂପେ ବିରାଜମାନ କରିଅଛନ୍ତି । ଅନ୍ୟ ଏକ ମନ୍ଦିରରେ ନବଗ୍ରହଙ୍କର ରୀତିମତ ପୂଜା ହେଉଅଛି ।

ଏହି ମନ୍ଦିରର ଅନତିଦୂରବର୍ତ୍ତୀ ଏକ ମନ୍ଦିର ମଧ୍ୟରେ ଦଣ୍ଡପାଣି ପ୍ରତିଷ୍ଠିତ । ଶିଷ୍ଟପାଳନ ଓ ଦୁଷ୍ଟଦମନାର୍ଥେ ଦଣ୍ଡହସ୍ତରେ ବିରାଜମାନ କରିଥିବାରୁ ଏହାଙ୍କର ନାମ ଦଣ୍ଡପାଣି ହୋଇଅଛି । ତାହାଙ୍କର ପୂଜା ପ୍ରତ୍ୟେକ ରବିବାର ଓ ମଙ୍ଗଳବାରରେ ହୁଏ ।

ଦଣ୍ଡପାଣିଙ୍କ ମନ୍ଦିରର ଅଳ୍ପ ଦୂରରେ କାଳକୂପ ନାମକ ଏକ କୂପ ଅଛି । ଠିକ୍ ମଧ୍ୟାହ୍ନରେ ସୂର୍ଯ୍ୟଙ୍କ କିରଣ କୂପ-ଜଳ ଉପରେ ପଡ଼େ । ସେହି ସମୟରେ ଯଦି କେହି କୂପ ମଧ୍ୟରେ ନିଜ ଛାୟା ନଦେଖେ ତେବେ ତାହାର ଛମାସ ମଧ୍ୟରେ ମୃତ୍ୟୁ ହେବାର ବିଶ୍ୱାସ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ଅଛି ।

କାଳକୂପର ଅନତିଦୂରରେ ବୃଦ୍ଧକାଳେଶ୍ୱରଙ୍କ ମନ୍ଦିର । ଦାକ୍ଷିଣାତ୍ୟ ନନ୍ଦିବର୍ଦ୍ଧନନଗରର ରାଜା ଏହି ମନ୍ଦିର ନିର୍ମାଣ କରିଥିଲେ । ଏହାଙ୍କୁ ଦର୍ଶନ ଓ ପୂଜା କଲେ ଦରିଦ୍ରତା ବିନଷ୍ଟ ହୁଏ ।

ବୃଦ୍ଧକାଳେଶ୍ୱରଙ୍କ ମନ୍ଦିର ନିକଟରେ କୃତ୍ତିବାସେଶ୍ୱରଙ୍କ ମନ୍ଦିର ଥିଲା । ସମ୍ରାଟ୍ ଆରଙ୍ଗଜେବ ତାହା ଭଗ୍ନ କରାଇ ତଦୁପକଣ୍ଠରେ ଏକ ମସଜିଦ୍ ନିର୍ମାଣ କରାଇଥିଲେ । ଏହାର ଅନତିଦୂରରେ ରତ୍ନେଶ୍ୱରଙ୍କର ମନ୍ଦିର ଅଛି । ଯଦି କୌଣସି ଲୋକ ରତ୍ନେଶ୍ୱରଙ୍କୁ ଦର୍ଶନ କରି ବିଦେଶ

ଯାତ୍ରା କରେ ଓ ଦୈବାତ୍ ତାହାର ସ୍ୱଦେଶରେ ମୃତ୍ୟୁ ହୁଏ, ତେବେ ସେ ଲୋକ କାଶୀକ୍ଷେତ୍ରରେ ମୃତ୍ୟୁ ହେବାର ଫଳ ଲାଭକରେ ।

କାଳଭୈରବଙ୍କ ମନ୍ଦିରର କିଛି ଦୂରରେ ଭଦ୍ରକାଳୀଙ୍କର ମନ୍ଦିର ଅଛି । ତାହାର କିଞ୍ଚିତ୍ ଦୂରରେ ତୈଲଙ୍ଗସ୍ୱାମୀ ଓ ଲକ୍ଷ୍ମଣବାଲାଙ୍କର ମନ୍ଦିରଦ୍ୱୟ ଦେଖାଯାଏ । ଏଠାରୁ କିଛି ଦୂର ଅଗ୍ରସର ହେଲେ ପଞ୍ଚଗଙ୍ଗା ଘାଟ । ଏହା ନିକଟରେ ବେଣୀମାଧବଙ୍କର ମନ୍ଦିର ଥିଲା । ଆରଙ୍ଗଜେବ୍ ତାହା ଭଗ୍ନ କରି ସେହି ସ୍ଥାନରେ ମସଜିଦ୍ ନିର୍ମାଣ କରାଇଥିଲେ । ମନ୍ଦିରର ଚତୁର୍ଦ୍ଦିଗରେ ଥିବା ସ୍ତମ୍ଭଚତୁଷ୍ଟୟ ଅବଧି ଅକ୍ଷୁଣ୍ଣ ଭାବରେ ରହିଅଛି ଓ ଏ ପର୍ଯ୍ୟନ୍ତ ବେଣୀମାଧବଧ୍ୱଜା ନାମରେ ଅଭିହିତ ହେଉଅଛି । ସ୍ତମ୍ଭ ଉପରକୁ ଉଠିବା ସକାଶେ ପାବଚ୍ଛ ଅଛି । ଉପରିଭାଗରୁ କାଶୀନଗର ଓ ଗଙ୍ଗାଦେବୀଙ୍କ ବକ୍ଷର ଦୃଶ୍ୟ ଅତି ମନୋହର ଦେଖାଯାଏ ।

ଶ୍ରୀବିଶ୍ୱନାଥଙ୍କ ମନ୍ଦିରଠାରୁ ଦୁଇ ମାଇଲ ଦୂରରେ ତିଳଭାଣ୍ଡେଶ୍ୱରଙ୍କ ମନ୍ଦିର । ଗର୍ଭଗୃହରେ ତିନି ହାତ ଉଚ୍ଚ ଓ ଦଶ ହାତ ପରିଧିବିଶିଷ୍ଟ ପ୍ରକାଣ୍ଡ ଲିଙ୍ଗମୂର୍ତ୍ତି ପ୍ରତିଷ୍ଠିତ । ଶ୍ରୀବିଗ୍ରହ ପ୍ରତ୍ୟହ ତିଳପ୍ରମାଣରେ ବୃଦ୍ଧିପ୍ରାପ୍ତ ହେଉଥିବାରୁ ଏହାଙ୍କର ନାମ ତିଳଭାଣ୍ଡେଶ୍ୱର ହୋଇଅଛି । ଏହି ମନ୍ଦିରର ଅନତିଦୂରରେ ମାନେଶ୍ୱରଦେବଙ୍କ ମନ୍ଦିର ଅଛି । ରାଜା ମାନସିଂହଙ୍କ ଦ୍ୱାରା ମନ୍ଦିର ନିର୍ମାଣ ହୋଇ ଦେବଦେବ ପ୍ରତିଷ୍ଠିତ ହୋଇଥିଲେ । ଶ୍ରୀ ମାନେଶ୍ୱରଙ୍କ ମନ୍ଦିରର କିଞ୍ଚିତ୍ ଦୂରରେ ମାନସରୋବର ନାମକ ଏକ ବୃହତ୍ ଗଭୀର ସ୍ୱଚ୍ଛଜଳପୂର୍ଣ୍ଣ ପୁଷ୍କରିଣୀ ଅଛି । ତାହା କେତେକ ମଠରେ ବେଷ୍ଟିତ । ମଠମଧ୍ୟରେ ଶ୍ରୀ ବିଗ୍ରହସମୂହଙ୍କର ପୂଜା ହେଉଅଛି ।

ମାନସରୋବର ନିକଟବର୍ତ୍ତୀ ଗଙ୍ଗାଦେବୀଙ୍କ କୂଳରେ ଶ୍ରୀକେଦାରେଶ୍ୱରଦେବଙ୍କ ମନ୍ଦିର । ସେଠାରେ ଅନ୍ନପୂର୍ଣ୍ଣା, ଗଣେଶ ଓ ଲକ୍ଷ୍ମୀନାରାୟଣଙ୍କ

ଶ୍ରୀ ବିଗ୍ରହ ପ୍ରତିଷ୍ଠିତ ହୋଇଅଛନ୍ତି । ନଗରର ମଧ୍ୟ ସ୍ଥଳରେ ଶ୍ରୀ ତ୍ରିଲୋଚନଦେବଙ୍କ ମନ୍ଦିର, ତନ୍ମଧ୍ୟସ୍ଥିତ ଲିଙ୍ଗ ପୂର୍ବକାଳରୁ ସର୍ବଶ୍ରେଷ୍ଠ ଲିଙ୍ଗସ୍ୱରୂପ ପୂଜିତ ହେଉଅଛନ୍ତି । ପୁନାନଗରନିବାସୀ ଏକ ସହୃଦୟ ଧର୍ମପରାୟଣ ବ୍ୟକ୍ତି ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିର-ସଂଲଗ୍ନ ଏକ ବାରଣ୍ଡାରେ ଶିଖଗୁରୁ ନାନକଙ୍କର ମୂର୍ତ୍ତି ଅଛି । ମୃତ୍ୟୁପରେ ଲୋକମାନେ ଐହିକ ପାପକାର୍ଯ୍ୟନିବନ୍ଧନ ଯମଦୂତମାନଙ୍କଦ୍ୱାରା କିରୂପ ଯାତନା ଭୋଗକରନ୍ତି, ତହିଁର ଜାଜ୍ୱଲ୍ୟମାନ ପ୍ରତିକୃତିସମୂହ ପ୍ରାଚୀର ଗାତ୍ରରେ ଅଙ୍କିତ ହୋଇ ଦର୍ଶକମାନଙ୍କୁ ଶିକ୍ଷା ଦେଉଅଛି ।

କାଶୀନଗରର ପୂର୍ବ ଦିଗରେ ଗଙ୍ଗାଦେବୀ ପ୍ରବାହିତା । ତୀରରେ ଅନେକ ଘାଟ ବିଦ୍ୟମାନ । ତନ୍ମଧ୍ୟରେ ମଣିକର୍ଣ୍ଣିକା ଘାଟ ଅତି ପବିତ୍ର ଓ ସର୍ବୋତ୍କୃଷ୍ଟ ଅଟେ । ଏହି ସ୍ଥାନରେ ଶ୍ରୀବିଷ୍ଣୁ ଶ୍ରୀ ବିଶ୍ୱେଶ୍ୱରଙ୍କ ପୂଜା ସମାପନକରି ଦଣ୍ଡପ୍ରଣାମ କରିବା ସମୟରେ ତାହାଙ୍କ ମସ୍ତକ ମଣି ପତିତ ଓ ତିରୋହିତ ହୋଇଥିବାରୁ ତଦବଧି ଘାଟର ନାମ ମଣିକର୍ଣ୍ଣିକା ହୋଇଅଛି । ପ୍ରତ୍ୟହ ଏହି ଘାଟରେ ସହସ୍ରାଧିକ ଲୋକ ସ୍ନାନ ଓ ତର୍ପଣ କରୁଅଛନ୍ତି । ଘାଟ ନିକଟରେ ଶବଦାହ ହେଉଅଛି । ଘାଟ ଉପରେ ଶ୍ରୀବିଷ୍ଣୁଙ୍କର ମର୍ମରପ୍ରସ୍ତରଉପରେ ଖୋଦିତ ପାଦପଦ୍ମଦ୍ୱୟ ପୂଜା ପାଉଅଛନ୍ତି । ମଣିପାତ ସମୟରୁ ଶ୍ରୀ ବିଷ୍ଣୁଙ୍କ ପାଦପଦ୍ମଦ୍ୱୟର ଚିହ୍ନ ରହିଥିବାର ବିଶ୍ୱାସ ଚଳିଆସୁଅଛି ।

ମଣିକର୍ଣ୍ଣୀଜ୍ଞାନବାପ୍ୟୋର୍ବିଷ୍ଣୁପାଦୋଦକେ ତଥା ।
ହ୍ରଦେ ପଞ୍ଚନଦେ ସ୍ନାତ୍ୱା ନ ମାତୁଃ ସ୍ତନପୋ ଭବେତ୍ ॥

ଦଶାଶ୍ୱମେଧ ଘାଟ ଶ୍ରୀ ବିଶ୍ୱେଶ୍ୱରଙ୍କ ମନ୍ଦିରଠାରୁ ଦୁଇମାଇଲ ଦୂରରେ ଅବସ୍ଥିତ । ପିତାମହ ବ୍ରହ୍ମା ଏଠାରେ ଦଶଗୋଟି ଅଶ୍ୱମେଧ ଯଜ୍ଞ ସମାପନ କରିଥିବାରୁ ଏହାର ନାମ ଦଶାଶ୍ୱମେଧ ଘାଟ ହୋଇଅଛି ।

ଘାଟ ନିକଟରେ ଅଦୃଶ୍ୟ ଦେବମନ୍ଦିରର ଶ୍ରେଣୀବଦ୍ଧ ହୋଇ ଶୋଭା ପାଉଅଛନ୍ତି । ପିଶାଚମୋଚନ ତୀର୍ଥ ନଗରର ପଶ୍ଚିମ ଭାଗରେ ଅବସ୍ଥିତ । ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଶାପବଶତଃ କୁଷ୍ଠରୋଗାକ୍ରାନ୍ତ ହୋଇ କାଶୀଧାମରେ ସୂର୍ଯ୍ୟଦେବଙ୍କୁ ପୂଜା କରି ଉକ୍ତ ରୋଗରୁ ମୁକ୍ତ ହେବାରୁ ପୂଜା ସ୍ଥାନରେ ଶାମ୍ବ ଶାମ୍ବାଦିତ୍ୟ ନାମକ ଶ୍ରୀ ବିଗ୍ରହ ଓ ସୂର୍ଯ୍ୟକୁଣ୍ଡ ସ୍ଥାପନ କରିଥିଲେ । ତଦବଧି ଉକ୍ତ ସ୍ଥାନ ଶାମ୍ବାଦିତ୍ୟ ତୀର୍ଥ ନାମ ଧାରଣ କରିଅଛି ।

ଶ୍ରୀ ବିଶ୍ୱନାଥଙ୍କ ମନ୍ଦିରରୁ ପ୍ରାୟ ତିନିମାଇଲ ଦୂରରେ ହରିଶ୍ଚନ୍ଦ୍ର ଘାଟ ବିଦ୍ୟମାନ । ପ୍ରତ୍ୟହ ଏଠାରେ ଅନେକ ଶବଦାହ ହୁଏ । ଶବଦାହକାରିମାନଙ୍କଠାରୁ ଶୁଳ୍କ ଆଦାୟ କରିବାର ପ୍ରଥା ଆବହମାନ-କାଳରୁ ପ୍ରଚଳିତ ଅଛି । ସୂର୍ଯ୍ୟବଂଶାବତଂସ ରାଜା ହରିଶ୍ଚନ୍ଦ୍ର ମହର୍ଷି ବିଶ୍ୱାମିତ୍ରଙ୍କଦ୍ୱାରା ଯାଗ ସମାପନକରି ଦକ୍ଷିଣାସ୍ୱରୂପ ଯାଜକ ବିଶ୍ୱାମିତ୍ରଙ୍କୁ ସସାଗରା ଧରା ଦାନ କରିଥିଲେ । ବିଶ୍ୱାମିତ୍ରଙ୍କ କଠୋରାଦେଶ କ୍ରମେ ରାଜା ହରିଶ୍ଚନ୍ଦ୍ର ପତ୍ନୀ ଶୈବ୍ୟା ଓ ରୋହିତାଶ୍ୱ ପୁତ୍ରଙ୍କ ସହିତ ବନ ଗମନ-କଲେ । ତତ୍ପରେ ବହୁ ବର୍ଷ ବନବାସ କଲା ପରେ ହରିଶ୍ଚନ୍ଦ୍ର ପତ୍ନୀ ଓ ପୁତ୍ର ଦୁହିଁଙ୍କ ଭରଣ ପୋଷଣରେ ଅକ୍ଷମ ହୋଇ ନିଦ୍ରାବସ୍ଥାରେ ଦୁହିଁଙ୍କୁ ତ୍ୟାଗ-କରି ସ୍ୱଜୀବିକା ନିର୍ବାହାର୍ଥେ ଶ୍ମଶାନରକ୍ଷକ ଚଣ୍ଡାଳର ଦାସତ୍ୱ ସ୍ୱୀକାର କରିଥିଲେ । ଉକ୍ତ ଚଣ୍ଡାଳ ଘାଟରେ ଶବଦାହାର୍ଥେ ଆଗତ ଲୋକମାନଙ୍କ-ଠାରୁ ଶୁଳ୍କ ଆଦାୟ କରିବାର ଭାର ହରିଶ୍ଚନ୍ଦ୍ରଙ୍କ ଉପରେ ନ୍ୟସ୍ତ କଲା । ଦୈବ ଦୁର୍ବିପାକବଶତଃ ରୋହିତାଶ୍ୱ ସର୍ପାଘାତଦ୍ୱାରା କାଳକବଳରେ ପତିତ ହେବାରୁ ମାତା ଶୈବ୍ୟା ପୁତ୍ରର ଶବଦାହ କରିବା ସକାଶେ ସେହି ଶ୍ମଶାନକୁ ଆସିଥିଲେ । ବିନା ଶୁଳ୍କଦାନରେ ଶବଦାହ କରିବାକୁ ହରିଶ୍ଚନ୍ଦ୍ର ନିଷେଧ କରିବାରୁ, ଶୈବ୍ୟାଦେବୀ ଶୁଳ୍କ ଦାନରେ ଅକ୍ଷମ ହୋଇ ସ୍ୱାମୀଙ୍କ ନାମୋଚ୍ଚାରଣ କରି ମୁକ୍ତକଣ୍ଠରେ ରୋଦନକଲେ । କ୍ରନ୍ଦନ-ଧ୍ୱନିରୁ ରୋଦନକାରିଣୀ ଅବଳା ତାହାଙ୍କ ପତ୍ନୀ ଶୈବ୍ୟା ଓ ଶବ ତାହାଙ୍କ ପ୍ରିୟ ପୁତ୍ର ରୋହିତାଶ୍ୱ ଥିବାର ପରିଚୟ ପାଇ ହରିଶ୍ଚନ୍ଦ୍ର ଦୁଃଖାର୍ଣ୍ଣବରେ

ମଗ୍ନ ହୋଇଥିଲେ । ତଦବଧି ଘାଟର ନାମ ହରିଶ୍ଚନ୍ଦ୍ର ଘାଟ ହୋଇଅଛି ଓ ଉକ୍ତ ଚଣ୍ଡାଳର ବଂଶଧରମାନେ ଶ୍ମଶାନରୁ ଶୁଳ୍କ ଆଦାୟ କରି ଆସୁଅଛନ୍ତି ।

ଅସୀ ଓ ଗଙ୍ଗାଙ୍କ ସଙ୍ଗମ ସ୍ଥାନକୁ ଅସୀସଙ୍ଗମଘାଟ କହନ୍ତି । ଏହା ହରିଶ୍ଚନ୍ଦ୍ର ଘାଟଠାରୁ ଏକ ମାଇଲ ଦୂର ହେବ । ଉପରୋକ୍ତ ସୁପ୍ରସିଦ୍ଧ ଘାଟମାନଙ୍କ ବ୍ୟତୀତ ଗଙ୍ଗାନଦୀଙ୍କ କୂଳରେ ଅନ୍ୟାନ୍ୟ ଘାଟମାନ ଅଛି । ତହିଁରେ ଲୋକମାନେ ସ୍ନାନ ଓ ତର୍ପଣ କରି ଆସୁଅଛନ୍ତି ।

ଉତ୍କଳର ଖ୍ୟାତନାମା ରାଜା ଯଯାତିକେଶରୀ କାଶୀନଗରସ୍ଥିତ ମନ୍ଦିରସମୂହ ଅବଲୋକନକରି ତଦନୁକରଣରେ ୪୭୪ ମସିହାରେ ଭୁବନେଶ୍ୱରଦେବଙ୍କ ଅତ୍ୟୁଚ୍ଚ ଓ ସୁବୃହତ୍ ମନ୍ଦିର ଓ ତନ୍ନିକଟବର୍ତ୍ତୀ ଅନ୍ୟାନ୍ୟ ମନ୍ଦିରସମୂହ ନିର୍ମାଣ କରାଇଥିଲେ ।

ଶ୍ରୀ ବିଶ୍ୱନାଥଦେବଙ୍କ ମନ୍ଦିର ନିକଟରୁ ପ୍ରାୟ ପାଞ୍ଚମାଇଲ ଦୂରରେ ବିଶ୍ୱବିଦ୍ୟାଳୟର ସୁବୃହତ୍ ଅଟ୍ଟାଳିକାସମୂହ ନିର୍ମିତ ହୋଇଅଛି । ପୃଥକ୍୨ ପ୍ରକୋଷ୍ଠମାନଙ୍କରେ ଭିନ୍ନ୨ ବିଷୟର ଶିକ୍ଷାଦାନ ହେଉଅଛି । ପ୍ରକୋଷ୍ଠସମୂହ ପରସ୍ପର ଅନତିଦୂରରେ ସ୍ଥାପିତ ହୋଇଅଛି । ଛାତ୍ରମାନଙ୍କ ବାସୋପଯୋଗୀ ଛାତ୍ରାବାସ ମଧ୍ୟ ଅଛି ।

ତିଳଭାଣ୍ଡେଶ୍ୱରଙ୍କ ମନ୍ଦିରନିକଟରୁ ପ୍ରାୟ ଦେଢ଼ମାଇଲ ଗଲେ ଏକ ମନୋରମ ଉଦ୍ୟାନ ମଧ୍ୟରେ ସଙ୍କଟମୋଚନଙ୍କ ମନ୍ଦିର ଦୃଷ୍ଟିଗୋଚର ହେବ । ଏଠାର ଦୃଶ୍ୟ ଚିତ୍ତମୁଗ୍ଧକର ଅଟେ ।

କାଶୀନଗରସ୍ଥିତ ହିନ୍ଦୁକଲେଜ ସୁଦୂରଦେଶବାସିନୀ ସହୃଦୟା ରମଣୀ ଆନିବେସାନ୍ତଙ୍କଦ୍ୱାରା ସ୍ଥାପିତ ହୋଇ ସୁଚାରୁରୂପେ ଚାଳିତ

ହେଉଅଛି । ପ୍ରାସାଦସମୂହ ଓ [illegible] ଦୃଶ୍ୟ ଅତିସୁନ୍ଦର ଅଟେ । କଲେଜ ମଧ୍ୟସ୍ଥିତ ସୁପ୍ରଶସ୍ତ ହଲ୍‌ରେ ଶ୍ରୀସରସ୍ୱତୀ ଦେବୀଙ୍କର ମୂର୍ତ୍ତି ପ୍ରତିଷ୍ଠିତ । ହଲର ଭିତ୍ତିଗାତ୍ର ନାନାବିଧ ଚିତ୍ରରେ ମଣ୍ଡିତ ହୋଇଅଛି । ପ୍ରାସାଦସମ୍ମୁଖରେ ଛାତ୍ରମାନଙ୍କର କ୍ରୀଡ଼ା ସକାଶେ ଏକ ବୃହତ୍ ପ୍ରାଙ୍ଗଣ ଅଛି ଓ ଚତୁର୍ଦ୍ଦିଗସ୍ଥ ବୃକ୍ଷରାଜି ଏହାର ଶ୍ରୀ ବୃଦ୍ଧି କରୁଅଛି ।

କୁଇନ୍‌ସ୍‌-କଲେଜ-ପ୍ରାସାଦ ମଧ୍ୟରେ ସାରନାଥରୁ ସଂଗୃହୀତ ବୁଦ୍ଧଦେବଙ୍କର ପୂର୍ଣ୍ଣାବୟବବିଶିଷ୍ଟ ମୂର୍ତ୍ତି ଓ କେତେକ ଭଗ୍ନମୂର୍ତ୍ତି ସ୍ଥାପିତ ହୋଇଅଛି । ପ୍ରାସାଦସମ୍ମୁଖସ୍ଥିତ ବୃହତ୍ ପ୍ରାଙ୍ଗଣ ପୁଷ୍ପୋଦ୍ୟାନ ପରିବେଷ୍ଟିତ ହୋଇ ମନୋହର ଶୋଭା ଧାରଣ କରିଅଛି ।

କାଶୀନଗର ସଂସ୍କୃତଚର୍ଚ୍ଚାର ପୀଠସ୍ଥାନସ୍ୱରୂପ ଆବହମାନକାଳରୁ ପ୍ରଖ୍ୟାତି ଲାଭ କରିଆସୁଅଛି । ଜ୍ୟୋତିଷଶାସ୍ତ୍ରଚର୍ଚ୍ଚା ମଧ୍ୟ ଏଠାରେ ହେଉଥିଲା । ଜୟପୁର ରାଜା ଜୟସିଂହଙ୍କ ନିର୍ମ୍ମିତ ମାନମନ୍ଦିର ଭିତ୍ତିଗାତ୍ରରେ ଏକ ଭିତ୍ତିଯନ୍ତ୍ର ଅଙ୍କିତ ହୋଇଅଛି । ଏହା ନିକଟରେ ଗ୍ରହମାନଙ୍କର ଗତି ନିର୍ଣ୍ଣାୟକ ଏକ ଯନ୍ତ୍ର ଅଛି । ସାମ୍ରାଟ ଯନ୍ତ୍ର ଦ୍ୱାରା ସୂର୍ଯ୍ୟ ଓ ଗ୍ରହ ନକ୍ଷତ୍ରମାନଙ୍କର ଊର୍ଦ୍ଧ୍ୱାଧଃ ଗତି ନିର୍ଣ୍ଣିତ କରାଯାଏ । ତତ୍ ସନ୍ନିକଟରେ ଚକ୍ରଯନ୍ତ୍ର ଅଛି । ରାଜା ଜୟସିଂହଙ୍କ ସ୍ଥାପିତ ଅନ୍ୟ ଚାରିଗୋଟି ମାନମନ୍ଦିର ଦିଲ୍ଲୀ ମଥୁରା, ଉଜ୍ଜୟିନୀ ଓ ଜୟପୁରରେ ଦେଖାଯାଏ ।

କାଶୀନଗରର [illegible] ଦିଗରେ ଗଙ୍ଗାନଦୀଙ୍କର ଅପର ପାରିରେ ରାମନଗର ଅବସ୍ଥିତ । ନୌକାରେ ଗଙ୍ଗାପାର ହୋଇ କିମ୍ବା ଘୋଡ଼ାଗାଡ଼ିରେ ରେଲଓ୍ୱେ ବ୍ରିଜ (ପୋଲ) ଅତିକ୍ରମ କରି ରାମ ନଗରରେ ପ୍ରବେଶ କରାଯାଏ । ଗଙ୍ଗାପାର ସମୟରେ କାଶୀନଗରର ଶୋଭା ଅତି ମନୋହର ଦେଖାଯାଏ । ରାମନଗର ଯିବା ରାସ୍ତା ପାର୍ଶ୍ୱରେ ବୃକ୍ଷଲତାଦିମଣ୍ଡିତ

ନସ୍ତକମୁଣ୍ଡକର ଏକ ମନ୍ଦିର ଅଛି । ଗର୍ଭଗୃହରେ ବିରାଜମାନ ସ୍ୱର୍ଣ୍ଣାଳଙ୍କାର ବିଭୂଷିତ ଦୁର୍ଗାଦେବୀଙ୍କର ଶ୍ରୀବିଗ୍ରହ ଚିତ୍ତାକର୍ଷକ ଅଟେ । ମନ୍ଦିରସମ୍ମୁଖରେ ସ୍ୱଚ୍ଛଜଳପୂର୍ଣ୍ଣ ଏକ ବୃହତ୍ ପୁଷ୍କରିଣୀ ଅଛି । ଏଠାରୁ ରାମନଗର ସହର ପ୍ରାୟ ଏକ ମାଇଲ ହେବ । ସହରର ଅପର ପାର୍ଶ୍ୱରେ ଗଙ୍ଗାନଦୀଙ୍କ କୂଳରେ କାଶୀରାଜାଙ୍କର ପ୍ରାସାଦ ଅବସ୍ଥିତ । ତତ୍‌ସଂଲଗ୍ନ ଏକ କ୍ଷୁଦ୍ର ମନ୍ଦିରରେ ଶିବଲିଙ୍ଗ ପ୍ରତିଷ୍ଠିତ ହୋଇଅଛନ୍ତି । ଏହା ନିକଟରେ ଅନ୍ୟ କ୍ଷୁଦ୍ର ମନ୍ଦିରଦ୍ୱୟ ଅଛି । ରାଜପ୍ରାସାଦ ମଧ୍ୟସ୍ଥିତ ଚନ୍ଦ୍ରୋଦ୍ୟାନ କ୍ରୀଡ଼ା ପୁଷ୍କରିଣୀ, ମର୍ମରପ୍ରସ୍ତରନିର୍ମିତ ସୋପାନାବଳୀ ପ୍ରଭୃତି ପ୍ରାସାଦର ଶୋଭା ବୃଦ୍ଧି କରୁଅଛି । ଏ ସ୍ଥାନର ରାମଲୀଳା ଯାତ୍ରା ଜଗତ୍‌ବିଖ୍ୟାତ ଅଟେ । ଏହାକୁ କ୍ଷୁଦ୍ର ବ୍ୟାସକାଶୀ କହନ୍ତି ।

ରାମନଗରଠାରୁ ତିନି ମାଇଲ ଦୂରବସ୍ଥିତ ଏକ ପ୍ରାନ୍ତର ମଧ୍ୟରେ ଗୋଟିଏ କ୍ଷୁଦ୍ର ମନ୍ଦିର ଅଛି । ତନ୍ମଧ୍ୟରେ ବୃହଦାକାର ଶିବଲିଙ୍ଗ ଓ ମନ୍ଦିର ଭିତ୍ତିଖୋଦିତ କ୍ଷୁଦ୍ର ପ୍ରକୋଷ୍ଠରେ ବ୍ୟାସଦେବଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି । ସେବା ପୂଜା ଏକ ସନ୍ନ୍ୟାସୀଙ୍କ ଦ୍ୱାରା ହେଉଅଛି । ବ୍ୟୟନିର୍ବାହ ନିମନ୍ତେ ଭୂସମ୍ପତ୍ତି ନାହିଁ । ପଥ ମଧ୍ୟରେ କିମ୍ବା ମନ୍ଦିରନିକଟରେ ସାମାନ୍ୟ ପଲ୍ଲୀଗ୍ରାମ ବିଚ୍ଛିନ୍ନଭାବରେ ରହିଅଛି । ରାସ୍ତା ମଧ୍ୟ ସୁଗମ ନୁହେଁ । ଏହାକୁ ବ୍ୟାସକାଶୀ କହନ୍ତି । ଏହି କ୍ଷୁଦ୍ର ମନ୍ଦିରରେ ପ୍ରତିଷ୍ଠିତ ଶିବଲିଙ୍ଗ ଓ ବ୍ୟାସଦେବଙ୍କ ମୂର୍ତ୍ତିଙ୍କୁ ଦର୍ଶନ ନ କଲେ କାଶୀ-ବିଶ୍ୱନାଥଙ୍କ ଦର୍ଶନ ଅସମ୍ପୂର୍ଣ୍ଣ ହେବା ବିଶ୍ୱାସରେ କେତେକ ଲୋକ ଦର୍ଶନାର୍ଥେ ଏଠାକୁ ଆସୁଅଛନ୍ତି । ମେଳା ସମୟରେ ଏଠାରେ ଅନେକ ଲୋକଙ୍କର ସମାଗମ ହୁଏ ।

---

# ସାରନାଥ ।

ସାରନାଥ କାଶୀନଗରଠାରୁ ଦୁଇ ମାଇଲ ଦୂରରେ ଉତ୍ତର ପଶ୍ଚିମ କୋଣେ ଅବସ୍ଥିତ । ଏହାର ପ୍ରାଚୀନ ନାମ ମୃଗଦାବ । ବୁଦ୍ଧଦେବ ଏଠାକୁ ଆସି ଧର୍ମପ୍ରଚାର କରିବା ସମୟରୁ ଏହା ବୁଦ୍ଧକାଶୀ ଆଖ୍ୟା ଧାରଣ କରି ସାରନାଥସଙ୍ଘାରାମ ନାମେ ଅଭିହିତ ହେଲା । ବୁଦ୍ଧଦେବ କପିଳବସ୍ତୁନଗରରେ ଜନ୍ମଗ୍ରହଣ କରି ଗୟାନଗରୀରେ ବୁଦ୍ଧତ୍ୱ ଲାଭ କଲେ । ତତ୍ପରେ ଗୟାରୁ କାଶୀ ଯାତ୍ରା କରି ସେଠାରେ ଧର୍ମପ୍ରଚାର ଓ ଶିକ୍ଷା ଦାନକଲେ । ଅବଶେଷରେ କୁଶିନଗରରେ ନିର୍ବାଣପ୍ରାପ୍ତ ହେଲେ । ବୌଦ୍ଧଧର୍ମାବଲମ୍ବୀମାନେ ଏହି ସ୍ଥାନ ଚତୁଷ୍ଟୟକୁ ମହାତୀର୍ଥ-ସ୍ୱରୂପ ଗଣ୍ୟ କରନ୍ତି । ତନ୍ମଧ୍ୟରେ ବୁଦ୍ଧଗୟା ପ୍ରଥମ ଓ ସାରନାଥ ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି ।

ସାରନାଥରେ ବୌଦ୍ଧଧର୍ମର ପ୍ରଭାବ ବୃଦ୍ଧି ସଙ୍ଗେ ସଙ୍ଗେ ହିନ୍ଦୁମାନଙ୍କର ମହାତୀର୍ଥ କାଶୀନଗରର ଗୌରବ କ୍ରମେ କ୍ରମେ ହ୍ରାସ ହୋଇଥିଲା । ପରେ ବୌଦ୍ଧଧର୍ମର ଅବନତି ସଙ୍ଗେ ସଙ୍ଗେ ହିନ୍ଦୁଧର୍ମର ମାହାତ୍ମ୍ୟ ବୃଦ୍ଧି ହେଲା । ବୌଦ୍ଧମାନଙ୍କର କୀର୍ତ୍ତିସ୍ତମ୍ଭସମୂହ ଓ ଉପାସ୍ୟ ବିଗ୍ରହାଦି ଭୂଗର୍ଭରେ ପ୍ରୋଥିତ ହୋଇ ଲୁପ୍ତ ହେଲା । କାଶୀ ରାଜା ଚୈତସିଂହ ଏକ କୀର୍ତ୍ତିସ୍ତମ୍ଭ ଓ ବୁଦ୍ଧଦେବଙ୍କର କେତେକ ମୂର୍ତ୍ତି ପୁନରୁଦ୍ଧାର କରିଥିଲେ । କ୍ରମେ କ୍ରମେ ଅନ୍ୟାନ୍ୟ ମୂର୍ତ୍ତି ଓ କୀର୍ତ୍ତିସ୍ତମ୍ଭ-ସମୂହ ଆବିଷ୍କୃତ ହେଲା । ସାରନାଥରେ ପ୍ରତିଷ୍ଠିତ ବୁଦ୍ଧଦେବଙ୍କ ଧ୍ୟାନମଗ୍ନ ଶ୍ରୀବିଗ୍ରହ ଚିତ୍ତାକର୍ଷକ ଓ ଭକ୍ତ୍ୟୁଦ୍ଦୀପକ ଅଟେ । ଆବିଷ୍କୃତ ସ୍ତମ୍ଭମାନଙ୍କ ମଧ୍ୟରେ ଧମେକସ୍ତୂପ ସର୍ବୋତ୍କୃଷ୍ଟ ।

ଆମ୍ଭେମାନେ କାଶୀଧାମରେ ତନଗ[illegible] ଅକ୍ଟୋବର ମାସ ୭ ତାରିଖ ବେଳ ଚାରିଟା ସମୟରେ ସେଠାରୁ ଅଯୋଧ୍ୟା ଯାତ୍ରା କଲୁ ।

ଦ୍ୱିତୀୟବାର ୧୯୨୨ ମସିହା ନଭେମ୍ବର ମାସ ୧୦ ତାରିଖେ କାଶୀରେ ଚତୁର୍ଥ ଦୁଇ ଦିନ ରହିଥିଲୁଁ ।

---

## ଅଯୋଧ୍ୟା ।

ଯସ୍ୟାଃ ପଶ୍ଚିମତୋ ନଦଃ ପ୍ରବହତି ବ୍ରହ୍ମାମୃତୋ ଘର୍ଘରଃ ।
ସାମୀପ୍ୟଂ ନ ଜହାତି ଯତ୍ର ସରଯୂଃ ପୁଣ୍ୟା ନଦୀ ସର୍ବଦା ॥
ବଦ୍ୟା ଯତ୍ର ମହାଧିକା ଗିରିସୁତେ ! ସ୍ନାନଞ୍ଚ ବକ୍ଷ୍ୟୋର୍ଦ୍ଧ୍ୱତଃ ।
ସାଯୋଧ୍ୟା ବିମଳା ପୁରୀ ପୁରବରୀ ସ୍ୟାତ୍ ବଃ ସଦା ନନ୍ଦଦା । ୧୨ ।
ଯସ୍ୟାସ୍ତୀରେ ପୁଣ୍ୟତୋୟାୟା କୂଜଦ୍ଧଂସାଳିବିହଙ୍ଗମା ।
ସରଯୂର୍ନାମତଷ୍ଟିମା ମାନସାତ୍ ପ୍ରଭବୋତ୍ତମା । ୫୬ ।
ପଶ୍ଚିମୋତ୍ତରତଃ ପୁଣ୍ୟା ପୂର୍ବସ୍ୟାଂ ଦିଶି ସର୍ବଦା ।
ପୁଣ୍ୟବୃଦ୍ଧିକରୀ ସା ଚ ଘର୍ଘରେଣସଙ୍ଗମା । ୫୭ ।
ମୁନୀଶ୍ୱରଶ୍ରିତତଟା ଜାଚନ୍ତି ଜଗଦୁଦ୍ଧୃତା ।
ଗଙ୍ଗା ଚ ସରଯୂଶ୍ଚୈବ ବ୍ରହ୍ମଦ୍ରବ ଇତୀର୍ଯ୍ୟତେ । ୫୮ ।
ଶ୍ରୂୟତାଂ ମହିମା ତସ୍ୟା ମନୋ ଦତ୍ତ୍ୱା ଚ ପାର୍ବତି !
ଅକାରେ ବାସୁଦେବଃ ସ୍ୟାତ୍ ଯକାରସ୍ତୁ ପ୍ରଜାପତିଃ । ୬୧ ।
ଉକାରେ ରୁଦ୍ରରୂପସ୍ତୁ ତାଂ ଧ୍ୟାୟନ୍ତି ମୁନୀଶ୍ୱରାଃ ।
ସର୍ବୋପପାତକୈର୍ଯୁକ୍ତୈର୍ବ୍ରହ୍ମହତ୍ୟାଦିପାତକୈଃ । ୬୨ ।

ରୁଦ୍ରଯାମଳେ ହରଗୌରୀ ସମ୍ବାଦେ ଅଯୋଧ୍ୟା
ଖଣ୍ଡେ ପ୍ରଥମୋଽଧ୍ୟାୟଃ ।

କାଶୀଧାମରୁ ଅଯୋଧ୍ୟାନଗର ୧୧୭ ମାଇଲ ଦୂର । ରେଲ ଭଡ଼ା ଜଣକର ପ୍ରତ୍ୟେ[illegible] ୨୷ ଟଙ୍କା । ଷ୍ଟେସନ ନିକଟବର୍ତ୍ତୀ ଏକ ଧର୍ମଶାଳାରେ ରହି[illegible]ର ମଧ୍ୟସ୍ଥିତ ତୀର୍ଥସମୂହ ଦର୍ଶନ କଲୁଁ ।

ବର୍ତ୍ତମାନ ଅଯୋଧ୍ୟା ନଗର ରାମାୟଣବର୍ଣ୍ଣିତ ସମସ୍ତ ଗୌରବ ହରାଇ-ଅଛି । ସୂର୍ଯ୍ୟବଂଶୋଦ୍ଭୂତ ସୁବିଖ୍ୟାତ ରାଜନ୍ୟବର୍ଗଙ୍କ ରାଜଧାନୀ ଓ ଶ୍ରୀଭଗବାନଙ୍କ ଜନାବତାର ଶ୍ରୀରାମଚନ୍ଦ୍ରଙ୍କର ଜନ୍ମଭୂମି ଯୋଗୁଁ ଅଯୋଧ୍ୟା ଶାସ୍ତ୍ରୋକ୍ତ ସପ୍ତ ନଗରୀ ମଧ୍ୟରେ ପ୍ରଧାନ ।

ଅଯୋଧ୍ୟା ମଥୁରା ମାୟା * କାଶୀ କାଞ୍ଚୀ ହ୍ୟବନ୍ତିକା †
ପୁରୀ ଦ୍ୱାରବତୀ ଚୈବ § ସପ୍ତୈତା ମୋକ୍ଷଦାୟିକାଃ । ୨୫ ।

ବ୍ରହ୍ମାଙ୍କର ପ୍ରଥମ ପୁତ୍ର ସ୍ୱାୟମ୍ଭୁବମନୁ ପିତାଙ୍କୁ ବାସୋପଯୋଗୀ ସ୍ଥାନ ସକାଶେ ପ୍ରାର୍ଥନା କରିବାରୁ ବ୍ରହ୍ମାଙ୍କ ପ୍ରାର୍ଥନାନୁସାରେ ଶ୍ରୀବିଷ୍ଣୁ ବୈକୁଣ୍ଠ ମଧ୍ୟସ୍ଥିତ ଅଯୋଧ୍ୟା ନଗରୀକୁ ମନୁଙ୍କ ହସ୍ତରେ ଅର୍ପଣ କରି-ଥିଲେ । ମନୁ ବିଶ୍ୱକର୍ମାଙ୍କ ଦ୍ୱାରା ଭୂଲୋକରେ ଅଯୋଧ୍ୟା ନଗର ନିର୍ମାଣ କରାଇ ରାଜଧାନୀ ସ୍ଥାପନ କଲେ ।

(ରୁଦ୍ରଯାମଳ ପ୍ରଥମାଧ୍ୟାୟ ୩୦ ରୁ ୩୬ ଶ୍ଲୋକ ଦେଖ)

ସୂର୍ଯ୍ୟବଂଶର ଶେଷ ରାଜା ସୁମିତ୍ରଙ୍କ ଦ୍ୱାରା ଅଯୋଧ୍ୟା ନଗର ପରିତ୍ୟକ୍ତ ହୋଇ କ୍ରମଶଃ ଧ୍ୱଂସାବସ୍ଥା ପ୍ରାପ୍ତ ହେଲା । କିଛୁକାଳ ପରେ ରାଜା ବିକ୍ରମାଜିତ୍ ନଗର ପୁନଃ ସ୍ଥାପନ କରି ଲୁପ୍ତ କୀର୍ତ୍ତିସମୂହ ଉଦ୍ଧାର କରିଥିଲେ । ସରଯୂତୀରସ୍ଥିତ ନାଗେଶ୍ୱରଦେବଙ୍କ ମନ୍ଦିର ଏହାଙ୍କର ଅକ୍ଷୟ କୀର୍ତ୍ତି । ମୁସଲମାନମାନଙ୍କ ରାଜତ୍ୱ ସମୟରେ ତିନିଗୋଟି ପ୍ରଧାନ ମନ୍ଦିର ବ୍ୟତୀତ ବିକ୍ରମାଜିତଙ୍କ ନିର୍ମିତ ମନ୍ଦିରସମୂହ ବିଧ୍ୱସ୍ତ ହେଲା । ମୁସଲମାନମାନଙ୍କର ଅବନତି କ୍ରମେ ଅନ୍ୟାନ୍ୟ ମନ୍ଦିରସମୂହ ନିର୍ମାଣ ହୋଇଥିଲା ।

* ମାୟା – ହରିଦ୍ୱାର । † ଅବନ୍ତିକା – ଉଜ୍ଜୟିନୀ । § ଦ୍ୱାରବତୀପୁରୀ – ଦ୍ୱାରକା ନଗରୀ ।

ଅଯୋଧ୍ୟାନଗର ମଧ୍ୟରେ ରାମକୋଟ ପ୍ରସିଦ୍ଧ ଓ ପବିତ୍ର ସ୍ଥାନ ଅଟେ । ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ନିର୍ମିତ ଦୁର୍ଗ ରାମକୋଟନାମେ ଅଭିହିତ । ଦୁର୍ଗପରିବେଷ୍ଟିତ ପ୍ରାଚୀରମାନଙ୍କ ଗାତ୍ରରେ ବିଂଶତସଂଖ୍ୟକ ଗୁମ୍ଫା ଥିଲା । ପ୍ରତ୍ୟେକରେ ହନୁମାନ ପ୍ରଭୃତି ଅଷ୍ଟସେନାପତିମାନେ ପୃଥକ୍ ପୃଥକ୍ ଗୁମ୍ଫାରେ ବସତି କରି ନଗର ରକ୍ଷା କରୁଥିଲେ । ପ୍ରତ୍ୟେକ ଗୁମ୍ଫା, ରକ୍ଷକମାନଙ୍କ ନାମାନୁସାରେ ନାମ କରଣ ହୋଇଅଛି । ଦୁର୍ଗମଧ୍ୟରେ ଆଠଗୋଟି ରାଜପ୍ରାସାଦ ଥିଲା । ବର୍ତ୍ତମାନ ସେ ସମସ୍ତ ଲୁପ୍ତ ହୋଇଅଛି । ଶ୍ରୀରାମଚନ୍ଦ୍ରଙ୍କ ଜନ୍ମସ୍ଥାନରେ ପ୍ରତିଷ୍ଠିତ ମୂର୍ତ୍ତି ପ୍ରାଚୀନପରି ଦେଖାଯାଉନାହିଁ । ଜନ୍ମସ୍ଥାନ ନିକଟରେ ଏକ ମସ୍‌ଜିଦ ଅଛି । ବାବରଙ୍କ ରାଜତ୍ୱ ସମୟରେ କେତେକ ମନ୍ଦିର ଭଗ୍ନ ହୋଇ ତଦୁପକରଣରେ ଏହା ନିର୍ମ୍ମାଣ ହୋଇଥିଲା ।

କନକ ଭବନର ଦୃଶ୍ୟ ଅତି ମନୋହର । ତହିଁ ମଧ୍ୟରେ ଶ୍ରୀରାମଚନ୍ଦ୍ର ଓ ସୀତା ଦେବୀଙ୍କର ବିଗ୍ରହଦ୍ୱୟ ପ୍ରତିଷ୍ଠିତ ହୋଇଅଛନ୍ତି । ଶ୍ରୀମୂର୍ତ୍ତି ଓ ଭବନ ବସ୍ତ୍ରାଳଙ୍କାରରେ ମଣ୍ଡିତ ହୋଇ ଅପୂର୍ବ ଶୋଭା ଧାରଣ କରୁଅଛି ।

ନଗରମଧ୍ୟରେ ମଣି ପର୍ବତ ଏକ ପବିତ୍ର କ୍ଷେତ୍ର । ଯୁଦ୍ଧ ସମୟରେ ଲକ୍ଷ୍ମଣ ରାବଣ ଦ୍ୱାରା ଶକ୍ତିହତ ହୋଇ ମୋହପ୍ରାପ୍ତ ହେବାରୁ ତାଙ୍କୁ ପୁନର୍ଜୀବିତ କରିବା କାରଣ ଔଷଧାନୟନାର୍ଥେ ହନୁମାନ୍ ପ୍ରେରିତ ହେଲେ । ମାରୁତି ଗନ୍ଧମାଦନ ପର୍ବତକୁ ଯାଇ ଔଷଧ ଚିହ୍ନି ନ ପାରି ପର୍ବତଶୃଙ୍ଗର ଏକାଂଶ ଭଗ୍ନ କରି ମସ୍ତକରେ ରଖି ପ୍ରତ୍ୟାଗମନ କଲେ । ଅଯୋଧ୍ୟା ନିକଟ ଦେଇ ଆକାଶ ମାର୍ଗରେ ଯିବା ସମୟେ ଶ୍ରୀରାମଚନ୍ଦ୍ରଙ୍କ ଭ୍ରାତା ଭରତ ବାଟୁଳି ଦ୍ୱାରା ଆହତ କରିବାରୁ ହନୁମାନ୍ ପର୍ବତଶୃଙ୍ଗ ସହ ଭୂତଳଶାୟୀ ହେଲେ । ଦୂରପତନ ହେତୁ ଶୃଙ୍ଗର ଏକାଂଶ ଭଗ୍ନ

ହ୍ନୋଇଗଞ୍ଜ । ଉକ୍ତ ଉଦ୍ୟ ଶୃଙ୍ଗର ନାମ ମଣିପର୍ବତ । ବର୍ତ୍ତମାନ ପର୍ବତ ଇଷ୍ଟକ ଓ ପ୍ରସ୍ତରର ଭଗ୍ନାଂଶରେ ଆଚ୍ଛାଦିତ ହୋଇଅଛି ।

ନଗରମଧ୍ୟରେ ସୁଗ୍ରୀବ ଓ କୁବେର ପର୍ବତ, ବଶିଷ୍ଠ ଓ ସୀତାକୁଣ୍ଡ, ଓ ଅନ୍ୟାନ୍ୟ ଅନେକ କୁଣ୍ଡ ଅଛି । ସରଯୂଙ୍କ ତୀରରେ ରାମଘାଟ, ସୀତାଘାଟ, ଲକ୍ଷ୍ମଣଘାଟ ଓ ଭରତଘାଟ ସମସ୍ତ ଦେଖାଯାଏ । ଭକ୍ତିବତ୍ସଳ ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ଯୋଗଧାରଣାକ୍ରମେ ଯେ ସ୍ଥାନରେ ଆତ୍ମବିସର୍ଜନ କରିଥିଲେ, ତାହା ଲକ୍ଷ୍ମଣଘାଟନାମେ ଅଭିହିତ ହେଉଅଛି । ଶ୍ରୀରାମଚନ୍ଦ୍ର ଭ୍ରାତୃବିୟୋଗରେ ଅଧୀର ହୋଇ ଭରତ, ଶତ୍ରୁଘ୍ନ ଓ ନଗରବାସିମାନଙ୍କ ସହିତ ସରଯୂ ନଦୀରେ ପ୍ରବେଶ କରି ଯେ ସ୍ଥାନରେ ଦିବ୍ୟଧାମ ପ୍ରାପ୍ତ ହୋଇଥିଲେ ତାହାର ନାମ ରାମଘାଟ ବା ସ୍ୱର୍ଗଦ୍ୱାର । ଏହା ନିକଟରେ ଶ୍ରୀନାଗେଶ୍ୱରଦେବଙ୍କର ମନ୍ଦିର ଅଛି । ଘାଟମାନଙ୍କରେ ସ୍ନାନ ଓ ଦେବଦର୍ଶନ ନିମନ୍ତେ ବହୁସଂଖ୍ୟକ ଲୋକ ଆସନ୍ତି । କାର୍ତ୍ତିକପୂର୍ଣ୍ଣିମା ଦିନ ଏଠାରେ ଏକ ମେଳା ହୁଏ । ସେ ସମୟରେ ଲକ୍ଷାବଧି ଲୋକ ସମବେତ ହୁଅନ୍ତି । ଅଯୋଧ୍ୟାନଗରର ରାମଲୀଳା ଜଗଦ୍ୱିଖ୍ୟାତ ଅଟେ ।

ଆମ୍ଭେମାନେ ଅକ୍ଟୋବର ମାସ ୭ ତାରିଖ ରାତିରେ ଅଯୋଧ୍ୟା ଛାଡ଼ି ୮ ତାରିଖ ସକାଳେ ଲକ୍ଷ୍ନୌରେ ପହୁଞ୍ଚିଲୁଁ । ଅଯୋଧ୍ୟାରୁ ଲକ୍ଷ୍ନୌ ୮୪ ମାଇଲ ଦୂର । ରେଲଭଡ଼ା ଇଣ୍ଟର ଟ ୨।୮/ ଓ ଥାର୍ଡ଼କ୍ଲାସ୍ ଟ ୧୫/ ୭ ହିସାବେ ପଡ଼ିଲା ।

---

## ଲକ୍ଷ୍ନୌ ।

ଲକ୍ଷ୍ନୌ ନଗର ଗୋମତୀ ନଦୀର ଦକ୍ଷିଣତୀରରେ ଅବସ୍ଥିତ । ଏହା ଏକ ସୁପ୍ରସିଦ୍ଧ ପ୍ରାଚୀନ ନଗର । ଶ୍ରୀରାମଚନ୍ଦ୍ର ରାବଣବଧାନନ୍ତର ଅଯୋଧ୍ୟା ପ୍ରତ୍ୟାଗମନ କରି ସିଂହାସନାରୋହଣପର ଅନୁଜ ଲକ୍ଷ୍ମଣଙ୍କୁ ଲକ୍ଷ୍ନୌ

ପ୍ରଦେଶର ଶାସନଭାର ଅର୍ପଣ କରିଥିଲେ । ଲକ୍ଷ୍ମଣ ଏହି ସ୍ଥାନରେ ଲକ୍ଷ୍ମଣପୁରୀ ନାମକ ନଗର ନିର୍ମାଣ କଲେ । ଲକ୍ଷ୍ମଣପୁରରୁ ଲକ୍ଷ୍ନୌ ହୋଇଅଛି ।

. ମୋଗଲ ସମ୍ରାଟଙ୍କ ରାଜତ୍ୱ ସମୟରେ ଲକ୍ଷ୍ନୌ ଉତ୍ତର-ପଶ୍ଚିମାଞ୍ଚଳର ରାଜଧାନୀ ଥିଲା । ସହର ମଧ୍ୟସ୍ଥିତ କୈଶରବାଗ, ଲକ୍ଷିଦରୱାଜା, ଇମାମ୍-ବାଗ, ରୁମିଦରୱାଜା, ଛତ୍ରମଞ୍ଜିଲ, ଫାରହତବକସ୍, କୈଶର-ଇସୁଲତାନ (ଯାଦୁଘର), ଦେଲଖୋସବାଗ, ସେକନ୍ଦରବାଗ ଓ ରେସିଡେନ୍‌ସି ପ୍ରଭୃତି ପ୍ରାସାଦସମୂହ ଦର୍ଶନଯୋଗ୍ୟ ।

କୈଶରବାଗ, ନବାବ ଓ୍ୟାଜିଦ ଅଲ୍ଲିଖାଁଙ୍କ ଦ୍ୱାରା ତାହାଙ୍କ ବେଗମ୍‌ମାନଙ୍କ ବାସଭବନ ସକାଶେ ନିର୍ମିତ ହୋଇଥିଲା । କୈଶରବାଗ ମଧ୍ୟସ୍ଥିତ ବାରଦ୍ୱାରୀ ମଣ୍ଡପର ଦୃଶ୍ୟ ଅତୀବ ରମଣୀୟ । ଚତୁଃପାର୍ଶ୍ୱ ମନୋହର ଉଦ୍ୟାନରେ ବେଷ୍ଟିତ ହୋଇଅଛି । ଏହି ମଣ୍ଡପ ନବାବଙ୍କର ବିଳାସଭବନସ୍ୱରୂପ ବ୍ୟବହୃତ ହେଉଥିଲା । ଏହାର ପୂର୍ବଦ୍ୱାରର ନାମ ଲକ୍ଷିଦରୱାଜା ବା ଲକ୍ଷ୍ମୀଦ୍ୱାର । ବର୍ତ୍ତମାନ କେବଳ ଉକ୍ତ ଦରୱାଜା ବିଦ୍ୟମାନ, କିନ୍ତୁ ଅଟ୍ଟାଳିକା ସମସ୍ତ କାଳକବଳରେ ପତିତ ହୋଇଅଛି ଓ ଏହି ସ୍ଥାନରେ କ୍ୟାନିଙ୍ଗ୍ କଲେଜ ନିର୍ମାଣ ହୋଇଅଛି ।

ଇମାମ୍‌ବାଗ, ନବାବ ଅସଫଦୌଲ୍ଲାଙ୍କ ଦ୍ୱାରା ୧୭୮୪ ଖ୍ରିଷ୍ଟାବ୍ଦରେ ପନ୍ଦର ଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ ହୋଇଥିଲା । ଏହାର ପ୍ରବେଶଦ୍ୱାରର ତୋରଣ ରୁମିଦରୱାଜାନାମେ ଅଭିହିତ । ପ୍ରବେଶ ଦ୍ୱାର ତୋରଣ ପରେ ଅନ୍ୟ ଏକ ତୋରଣ ଅଛି । ତାହା ପାର ହେଲେ ଏକ ପ୍ରଶସ୍ତ ପ୍ରାଙ୍ଗଣ । ତହିଁର ଏକ ପାର୍ଶ୍ୱରେ ଏକ ସୁନ୍ଦର ମସଜିଦ । ମସଜିଦ୍‌ସମ୍ମୁଖରେ ଇମାମବାଗ ଅବସ୍ଥିତ । ମଧ୍ୟରେ ୧୬୭ ଫୁଟ ଦୀର୍ଘ ଓ ୫୨ ଫୁଟ ପ୍ରସ୍ଥବିଶିଷ୍ଟ ଏକ ପ୍ରକୋଷ୍ଠ ଅଛି । ଉଭୟ ପାର୍ଶ୍ୱରେ ଅଷ୍ଟକୋଣାକାର ଅନ୍ୟ ଦୁଇ

ପ୍ରକୋଷ୍ଠ । ପ୍ରକୋଷ୍ଠତ୍ରୟ ସୁବର୍ଣ୍ଣ ଓ ରଜତଜଡ଼ିତ ମହାର୍ଘ ବସ୍ତ୍ର, ବହୁମୂଲ୍ୟଦ୍ରବ୍ୟ ଓ ଝାଡ଼ଲଣ୍ଠନରେ ବିମଣ୍ଡିତ ହୋଇଅଛି । ମଧ୍ୟ ପ୍ରକୋଷ୍ଠ ପାର୍ଶ୍ୱର ଉପର-ଭାଗରେ ରକ୍ତବର୍ଣ୍ଣ ପ୍ରସ୍ତରନିର୍ମିତ ବାରଣ୍ଡା (ଗାଲାରି) ଅଛି । ନମାଜ ସମୟରେ ବେଗମ୍‌ମାନେ ଗାଲାରିରେ ଉପବେଶନ କରୁଥିଲେ । ପ୍ରକୋଷ୍ଠର ମଧ୍ୟସ୍ଥଳରେ ଅସଫ ଦୌଲାଙ୍କ ସମାଧି ସ୍ଥାପିତ ହୋଇଅଛି ।

ଇମାମ୍‌ବାରାର କିଞ୍ଚିତ୍ ଦୂରରେ ମହମ୍ମଦ୍ ଅଲ୍ଲୀ ସାହେବ, ବୃହତ୍ ଇମାମ୍‌ବାରାର ଅନୁକରଣରେ ଏକ କ୍ଷୁଦ୍ର ଇମାମବାରା ନିର୍ମାଣ କରିଥିଲେ । ଏହାକୁ ହୋସେନାବାଦ୍ ଇମାମ୍‌ବାରା କହନ୍ତି । ଉକ୍ତ ଇମାମ୍‌ବାରା-ପ୍ରାଙ୍ଗଣ-ସଂଲଗ୍ନ ଏକ ପ୍ରାସାଦରେ ମହମ୍ମଦ୍‌ଅଲ୍ଲୀ ଓ ତାହାଙ୍କ ମାତାଙ୍କର ସମାଧି-ଦ୍ୱୟ ପ୍ରତିଷ୍ଠିତ ହୋଇଅଛି । ସମ୍ମୁଖରେ ଏକ ଉଦ୍ୟାନ । ତନ୍ମଧ୍ୟରେ ଆଗ୍ରା ନଗରସ୍ଥିତ ତାଜମହଲର ଅନୁକରଣରେ ଏକ କ୍ଷୁଦ୍ର ତାଜମହଲ ନିର୍ମାଣ ହୋଇଅଛି ।

କୈଶରବାଗ ନିକଟରେ ନାଶିରଉଦ୍ଦିନ୍ ହାଇଦର ବେଗମ୍‌ମାନଙ୍କ ବାସଭବନୋପଯୋଗୀ ଏକ ମନୋହର ପ୍ରାସାଦ ନିର୍ମାଣ କରିଥିଲେ । ଏହା ଛତରମଞ୍ଜିଲନାମେ ଅଭିହିତ ହେଉଥିଲା । ବର୍ତ୍ତମାନ ଉକ୍ତ ପ୍ରାସାଦ କ୍ଲବ୍‌ଗୃହ ଓ ପୁସ୍ତକାଗାରସ୍ୱରୂପ ବ୍ୟବହୃତ ହେଉଅଛି ।

ଫାରହତବକସ୍ ପ୍ରାସାଦ ଗୋମତୀ ନଦୀତୀରରେ ଅବସ୍ଥିତ । ଏହା ସଦତ୍ ଅଲ୍ଲୀଖାଁଙ୍କ ରାଜତ୍ୱସମୟରୁ ଓ୍ୱାଜିଦ୍ ଅଲ୍ଲୀଖାଁଙ୍କ ରାଜତ୍ୱ ପର୍ଯ୍ୟନ୍ତ ନବାବମାନଙ୍କ ବାସଭବନସ୍ୱରୂପ ବ୍ୟବହୃତ ହେଉଥିଲା । ମଧ୍ୟସ୍ଥିତ ଏକ ପ୍ରକୋଷ୍ଠରେ ରାଜସିଂହାସନ ଥିଲା । ଏହାର ନାମ କୈଶର ଇସୁଲତାନ୍ । ବର୍ତ୍ତମାନ ଏହା ଯାଦୁଘରରେ ପରିଣତ ହୋଇଅଛି । ତନ୍ମଧ୍ୟରେ ଲକ୍ଷ୍ନୌ ରେସିଡେନ୍‌ସିର ଏକ କ୍ଷୁଦ୍ର ପ୍ରତିକୃତି ଓ ନାନା ସ୍ଥାନରୁ ସଂଗୃହୀତ ହିନ୍ଦୁ ଓ ବୌଦ୍ଧ ଦେବ ଦେବୀଙ୍କର ବିଗ୍ରହ ଓ ଛବି ପ୍ରଭୃତି

ରକ୍ଷା ହୋଇଅଛି । ସହରର ଅନତିଦୂରରେ ନବାବ ସଦତ୍ ଅଲ୍ଲୀଙ୍କ ଦ୍ୱାରା ନିର୍ମିତ ଏକ ପ୍ରାସାଦ ଦେଲ୍‌ଖୋସ୍‌ବାଗ୍ ଆଖ୍ୟା ଧାରଣ କରିଥିଲା । ନବାବ ଶିକାର ସକାଶେ ଯିବା ସମୟରେ ଏହାକୁ ବିଶ୍ରାମ ଗୃହସ୍ୱରୂପ ବ୍ୟବହାର କରୁଥିଲେ । ଏହାର ଚତୁଃପାର୍ଶ୍ୱରେ ପ୍ରମୋଦୋଦ୍ୟାନ ଥିଲା ।

ନବାବ ଓ୍ୟାଜିଦ୍ ଅଲ୍ଲୀଶା ତାହାଙ୍କର ପ୍ରିୟତମା ବେଗମ୍ ହିକାନ୍ଦର-ମହାଲଙ୍କ ବାସଭବନ ସକାଶେ ସୁଦୃଢ଼ ପ୍ରାଚୀରବେଷ୍ଟିତ ଏକ ମନୋହର ପ୍ରାସାଦ ନିର୍ମାଣ କରିଥିଲେ । ଏହାର ନାମ ସେକନ୍ଦରବାଗ୍ ଥିଲା । ବର୍ତ୍ତମାନ ଏହି ସ୍ଥାନରେ କେବଳ ଏକ କ୍ଷୁଦ୍ର ଉଦ୍ୟାନ ପରିଲକ୍ଷିତ ହୁଏ ।

ଲକ୍ଷ୍ନୌ ସହର ସିପାହିବିଦ୍ରୋହ ସମୟରେ ବିଦ୍ରୋହିମାନଙ୍କର ଏକ କେନ୍ଦ୍ରସ୍ଥଳ ଥିଲା । ସେ ସମୟରେ ସହରରେ ବାସ କରୁଥିବା ଇଂରେଜ ରମଣୀ ଓ ପୁରୁଷମାନଙ୍କ ମଧ୍ୟରୁ ଅନେକଙ୍କୁ ବିଦ୍ରୋହିମାନେ ହତ୍ୟା କରିଥିଲେ । ସେନାପତି ହେନେରି ଲରେନ୍‌ସ୍, ହ୍ୟାଭଲକ୍ ଓ ଆଉଟ୍‌ରାମ ପ୍ରଭୃତି ବୀର ପୁରୁଷମାନଙ୍କର ଅସାଧାରଣ ସାହସ, ଧୈର୍ଯ୍ୟ ଓ ବୀରତ୍ୱରେ ନଗର ରକ୍ଷା ହୋଇଥିଲା । ଲକ୍ଷ୍ନୌ ଏକ ବୃହତ୍ ସହର । ସରକାର ବାହାଦୂରଙ୍କ ପ୍ରଧାନ ପ୍ରଧାନ ଅଫିସମାନ ଏଠାରେ ଅଛି ।

ଅକ୍ଟୋବର ମାସ ୮ ତାରିଖ ଅପରାହ୍ଣ ଗୁରୁଘଣ୍ଟା ସମୟରେ ଆମ୍ଭେମାନେ ଲକ୍ଷ୍ନୌ ତ୍ୟାଗକରି ହରିଦ୍ୱାରଅଭିମୁଖେ ଯାତ୍ରାକଲୁଁ । ଲକ୍ଷ୍ନୌଠାରୁ ଲକସାର ୨୯୦ ମାଇଲ ଓ ସେଠାରୁ ହରିଦ୍ୱାର ୧୬ ମାଇଲ ଦୂର । ଗାଡ଼ିରେ ଅନେକ ଲୋକ ହେବାଯୋଗୁଁ ଷାଗରଣ ବସିବାକୁ ମଧ୍ୟ ପ୍ରଚୁର ସ୍ଥାନ ମିଳିଲା ନାହିଁ । ଲକ୍‌ସାର ଠାରେ ସକାଳେ ଗାଡ଼ି ବଦଳ ହୋଇ ୯ ତାରିଖ ପୂର୍ବାହ୍ଣ ୯ ଘଣ୍ଟା ସମୟରେ ହରିଦ୍ୱାର ଷ୍ଟେସନରେ ପହଞ୍ଚି ତନ୍ନିକଟବର୍ତ୍ତୀ ଏକ ଧର୍ମଶାଳାରେ ରହିଲୁଁ । କିନ୍ତୁ ଏହା ସୁବିଧାଜନକ ନ ହେବାରୁ ପରଦିବସ ଗଙ୍ଗାଦେବୀଙ୍କ ତୀରବର୍ତ୍ତୀ ଏକ ଦ୍ୱିତଳ ଗୃହରେ

ଦୈନିକ ଏକ ଟଙ୍କା ଭଡ଼ା ଦେଇ ବାସ କଲୁଁ । ଲକ୍ଷ୍ନୌ ଠାରୁ ହରଦ୍ୱାର ଇଣ୍ଟର ଭଡ଼ା ଟ ୭।। ଓ ଥାର୍ଡ ଟ ୪୲୵.ହସାବେ ପଡ଼ିଲା ।

---

## ହରିଦ୍ୱାର ।

ସ୍ୱର୍ଗଦ୍ୱାରେଣ ଯତ୍ ତୁଲ୍ୟଂ ଗଙ୍ଗାଦ୍ୱାରଂ ନ ସଂଶୟଃ ।
ତତ୍ରାଭିଷେକଂ କୁର୍ବୀତ କୋଟିତୀର୍ଥେ ସମାହିତଃ । ୨୭ ।
ପୁଣ୍ଡରୀକମବାପ୍ନୋତି କୁଳଞ୍ଚୈବ ସମୁଦ୍ଧରେତ୍ ।
ଉଷୈକାଂ ରଜନୀଂ ତତ୍ର ଗୋସହସ୍ର-ଫଳଂ ଲଭେତ୍ । ୨୮ ।
ମହାଭାରତ, ବନପର୍ବ ୮୪ ଅଧ୍ୟାୟ ।

ଶ୍ରୀମହାଦେବ ଦକ୍ଷପ୍ରଜାପତିଙ୍କ ଯଜ୍ଞ ବିନାଶାନନ୍ତର ତାହାଙ୍କ ସ୍ତବଦ୍ୱାରା ସନ୍ତୋଷ ଲାଭକରି ତାହାଙ୍କ ପ୍ରାର୍ଥନାମତେ ହରିଦ୍ୱାର, କନଖଳ ଓ ତନ୍ନିକଟବର୍ତ୍ତୀ ସ୍ଥାନସମୂହକୁ ପବିତ୍ର କ୍ଷେତ୍ର ସ୍ୱରୂପ ପ୍ରତିଷ୍ଠିତ କରିଥିଲେ । ଯଥା :—

ଇଦଂ କ୍ଷେତ୍ରଂ ମହାପୁଣ୍ୟଂ ଯାବତ୍ ବୈ ଯଜ୍ଞଭୂମିକା ।
ଯତ୍ର ମାମ୍ବାନମିଦଂ ହି ଜାତଂ ସର୍ବଂ ପ୍ରଜାପତେ । ୮୦ ।
ତସ୍ମାଦିଦଂ ମହାକ୍ଷେତ୍ରଂ ମାମ୍ବାଫଲ୍ଗୁଂ ଭବିଷ୍ୟତି ।
ସକୃଦ୍ଦର୍ଶନମାତ୍ରେଣ ହ୍ୟସ୍ୟ ତୀର୍ଥସ୍ୟ ମାନବ । ୮୧ ।
କୋଟି ଜନ୍ମ କୃତେଭ୍ୟସ୍ତୁ ପାପେଭ୍ୟଃ ବିମୁଚ୍ୟତେ ।
ପୃଥିବ୍ୟାଂ ଯାନି ତୀର୍ଥାନି ତେଷାଂ ଶ୍ରେଷ୍ଠତମଂ ସ୍ମୃତଂ । ୮୨ ।
ସ୍କନ୍ଦନାରଦ ସମ୍ବାଦେ, ସ୍କନ୍ଦପୁରାଣେ କେଦାରଖଣ୍ଡେ ମାୟାକ୍ଷେତ୍ର-
ମାହାତ୍ମ୍ୟଂ ଦ୍ୱିଷଷ୍ଟିତମୋଽଧ୍ୟାୟଃ ।

ଇଦଂ ତୀର୍ଥଂ ମହାପୁଣ୍ୟମକ୍ଷୁଦ୍ରଙ୍ଗାସମେ ପୁନଃ ।
ଗଙ୍ଗାଦ୍ୱାରମିତି ଖ୍ୟାତଂ ସ୍ମରଣାତ୍ ପାତନାଶନଂ । ୧ ।

ମହାଭଗୀରଥୋ ରାଜା ସୂର୍ଯ୍ୟବଂଶଧରଃ ପ୍ରଭୁଃ ।
ଆନୟାମାସ ସ୍ୱର୍ଗାଦ୍ଧୈ ଗଙ୍ଗାଂ ପରମପାବନୀଂ । ୨ ।
ସ୍ୱର୍ଗାତ୍ପତିତା ଗଙ୍ଗା ପୃଥିବ୍ୟାମାଗତା ଯଦା ।
ତଦୈବାସ୍ୟ ଦ୍ୱିଜଶ୍ରେଷ୍ଠ ଗଙ୍ଗାଦ୍ୱାରମିତି ସ୍ମୃତଂ । ୩ ।
ଗଙ୍ଗାଦ୍ୱାରୋତ୍ତରଂ ଯତ୍ର ସ୍ୱର୍ଗଭୂମିଃ ସ୍ମୃତା ବୁଧୈଃ ।
ଅନ୍ୟତ୍ତୁ ପୃଥିବୀ ପ୍ରୋକ୍ତା ଗଙ୍ଗାଦ୍ୱାରୋତ୍ତରଂ ବିନା । ୪ ।
ଇଦମେବ ମହାଭାଗ ! ସ୍ୱର୍ଗଦ୍ୱାରଂ ସ୍ମୃତଂ ବୁଧୈଃ ।
ଯସ୍ୟ ଦର୍ଶନମାତ୍ରେଣ ବିମୁକ୍ତୋ ଭବବନ୍ଧନୈଃ । ୫ ।
ଷଟ୍ତ୍ରିଂଶୋଽଧ୍ୟାୟଃ ।

ଗଙ୍ଗାଦ୍ୱାରେ କୁଶାବର୍ତ୍ତେ ବିଲ୍ୱକେ ନୀଳପର୍ବତେ ।
ସ୍ନାତ୍ୱା କନଖଲେ ତୀର୍ଥେ ପୁନର୍ଜନ୍ମ ନ ବିଦ୍ୟତେ । ୧୫ ।
ଦ୍ୱିତୀୟୋଽଧ୍ୟାୟଃ ।

ହରିଦ୍ୱାର ପୁଣ୍ୟତୋୟା ଗଙ୍ଗାନଦୀଙ୍କର ଦକ୍ଷିଣ ତଟରେ ଅବସ୍ଥିତା, ଏହା ହିନ୍ଦୁମାନଙ୍କର ଏକ ପ୍ରଧାନ ତୀର୍ଥ । ସତୀନାମଧାରିଣୀ ଭଗବତୀ ମାୟାଦେବୀ ଦକ୍ଷ ଯଜ୍ଞକୁଣ୍ଡରେ ଦେହତ୍ୟାଗ କରିଥିବାରୁ ମାୟାଦେବୀଙ୍କ ନାମାନୁସାରେ ଏହାକୁ ମହାପୁରୀ କହନ୍ତି । ସୂର୍ଯ୍ୟବଂଶାବତଂସ ଭଗୀରଥ ଗଙ୍ଗାଙ୍କୁ ସ୍ୱର୍ଗରୁ ଆଣିବା ସମୟରୁ ଏହାର ନାମ ଗଙ୍ଗାଦ୍ୱାର ହେଲା । ଗଙ୍ଗାଦ୍ୱାରର ଉତ୍ତରସ୍ଥ ସ୍ୱର୍ଗଭୂମି ଥିବାରୁ ଏହା ସ୍ୱର୍ଗଦ୍ୱାର ଆଖ୍ୟା ଧାରଣକଲା । ଶ୍ରୀ ବିଷ୍ଣୁଙ୍କ କଳାବତାର କପିଳଦେବ ଏଠାରେ କଠୋର ତପସ୍ୟା କରିଥିବାରୁ ତାହାଙ୍କ ନାମାନୁସାରେ ଏହା କପିଳସ୍ଥାନ ନାମେ ଅଭିହିତ ହେଲା । ଶୈବମାନେ ଏହାକୁ ହରଦ୍ୱାର କହନ୍ତି ।

ଯାତ୍ରୀମାନେ ଗଙ୍ଗାଦ୍ୱାର (ପାଟନିକଟବର୍ତ୍ତୀ) ବ୍ରହ୍ମକୁଣ୍ଡରେ ସ୍ନାନ ଓ ତର୍ପଣ କରନ୍ତି । ଘାଟପାର୍ଶ୍ୱସ୍ଥ ମନ୍ଦିରମଧ୍ୟରେ ଗଙ୍ଗାଦେବୀଙ୍କ

ମୂର୍ତ୍ତି ପ୍ରତିଷ୍ଠିତା । ନିକଟବର୍ତ୍ତୀ ଅନ୍ୟ ଏକ କ୍ଷୁଦ୍ର ମନ୍ଦିରରେ ଶ୍ରୀ ବିଷ୍ଣୁଙ୍କର ପାଦପଦ୍ମ ମର୍ମ୍ମରପ୍ରସ୍ତରୋପରି ଅଙ୍କିତ ହୋଇ ପୂଜା ପାଉଅଛନ୍ତି । ପ୍ରତ୍ୟେକ ବର୍ଷ ମହାବିଷୁବସଂକ୍ରାନ୍ତି ଦିବସ ମେଳା ସମୟରେ ଏଠାରେ ବହୁ ସଂଖ୍ୟକ ଯାତ୍ରିଙ୍କର ସମାଗମ ହୁଏ । ଦ୍ୱାଦଶବର୍ଷାନ୍ତରରେ କୁମ୍ଭମେଳା ସମୟରେ ଲକ୍ଷାଧିକ ଯାତ୍ରୀ ସ୍ନାନ କରିବାକୁ ଉପସ୍ଥିତ ହୁଅନ୍ତି । ଭିନ୍ନ ଭିନ୍ନ ସମ୍ପ୍ରଦାୟଭୁକ୍ତ ସନ୍ନ୍ୟାସୀ ଓ ଗୃହୀ ମୁକ୍ତିବାଞ୍ଛାରେ ସ୍ନାନ କରନ୍ତି ।

ସନ୍ଧ୍ୟାସମୟରେ ଗଙ୍ଗାଘାଟରେ ଗଙ୍ଗାଦେବୀଙ୍କର ଆରତି-ଦୃଶ୍ୟ ଅତୀବ ମନୋହର । ଭକ୍ତବୃନ୍ଦ ସତୃଷ୍ଣନୟନରେ ଆରତି ଦର୍ଶନ କରନ୍ତି । ଭକ୍ତମାନଙ୍କର କଣ୍ଠନିଃସୃତ ଗଙ୍ଗାଦେବୀଙ୍କ ସ୍ତବ, ଘଣ୍ଟା ଓ ଶଙ୍ଖଧ୍ୱନି ସହିତ ମିଶ୍ରିତ ହୋଇ ମହାଧ୍ୱନି ଉଠି ଚତୁର୍ଦ୍ଦିଗ ପ୍ରତିଧ୍ୱନିତ କରେ । ଯାତ୍ରିମାନଙ୍କ ପ୍ରଦତ୍ତ ଗଙ୍ଗାଦେବୀଙ୍କ ବକ୍ଷୋପରି ଭାସମାନ ପ୍ରଦୀପାବଳୀର ଦୃଶ୍ୟ ନୟନମୁଗ୍ଧକର ଅଟେ ।

ପୂର୍ବକାଳରେ ଏଠାରେ ଏକ ମହର୍ଷି କୁଶାସନରେ ଉପବିଷ୍ଟ ହୋଇ ତପସ୍ୟା କରୁଥିଲେ । ମହର୍ଷି ଧ୍ୟାନମଗ୍ନ ଥିବା ସମୟରେ ଗଙ୍ଗାଦେବୀଙ୍କର ସ୍ରୋତଦ୍ୱାରା ତାହାଙ୍କର କୁଶାକୁ ଭସାଇ ନେଇଥିଲେ । ମହର୍ଷି ତଦ୍ଦୃଷ୍ଟେ କୋପାନ୍ୱିତ ହୋଇ ଯୋଗପ୍ରଭାବରେ ଗଙ୍ଗାଦେବୀଙ୍କୁ ଆକର୍ଷଣ କରିବାରୁ ଦେବୀ ପ୍ରତ୍ୟାଗମନ କରି ମୁନିବରଙ୍କୁ କୁଶା ପ୍ରତ୍ୟର୍ପଣ କରିଥିଲେ । ତଦବଧି ଏହା କୁଶାବର୍ତ୍ତ ଘାଟ ନାମେ ଅଭିହିତ ହୋଇଅଛି । ଯାତ୍ରିମାନେ ପିତୃଗଣଙ୍କ ମୋକ୍ଷାର୍ଥେ ଏଠାରେ ସ୍ନାନ ତର୍ପଣାଦି କରନ୍ତି ।

ସର୍ବନାଥଙ୍କ ମନ୍ଦିର ଗଙ୍ଗା ଘାଟଠାରୁ ଅଳ୍ପଦୂରରେ ଏକ ଉଚ୍ଚ ଭୂମି ଉପରେ ନିର୍ମ୍ମିତ ହୋଇଅଛି । ମନ୍ଦିରଚତୁର୍ଦ୍ଦିଗରେ ଅନ୍ୟାନ୍ୟ ଅଟ୍ଟାଳିକାସମୂହ ଅଛନ୍ତି । ମନ୍ଦିର ମଧ୍ୟରେ ସର୍ବନାଥ ମହାଦେବ ବିରାଜମାନ କରିଅଛନ୍ତି । ଏଠାରେ ଜୈନ ଗଣ୍ଡକୀର ଦର୍ଶନ [illegible] । ତନ୍ମଧ୍ୟରେ କେତେକ ସଙ୍କେତ ଦୃଷ୍ଟିଗୋଚର ହୁଏ ।

ହରିଦ୍ୱାର ସ୍ଥିତ ମନ୍ଦିରମାନଙ୍କ ମଧ୍ୟରେ ମାୟାଦେବୀଙ୍କ ମନ୍ଦିର ଅତିପ୍ରାଚୀନ ଅଟେ । ଏହାର ଚତୁର୍ଦ୍ଦିଗ ବନାଚ୍ଛନ୍ନ । ସ୍ଥାନେ ସ୍ଥାନେ ଅଟ୍ଟାଳିକାମାନଙ୍କର ଭଗ୍ନସ୍ତୂପ ଦେଖାଯାଉଅଛି । ଦେବୀ ଚତୁର୍ଭୁଜା ମୂର୍ତ୍ତି । ହସ୍ତତ୍ରୟ ନୃମୁଣ୍ଡ, ଚକ୍ର ଓ ତ୍ରିଶୂଳରେ ସୁଶୋଭିତ । ଚତୁର୍ଥ ହସ୍ତ ଅଭୟ ଦାନାର୍ଥେ ପ୍ରସାରିତ । ଦେବୀଙ୍କର ତ୍ରିମୁଣ୍ଡ ଥିଲେ ମଧ୍ୟ ମସ୍ତକ ଓ ମୁଖାବୟବ ସିନ୍ଦୂର ଲିପ୍ତ ହୋଇ ଥିବାରୁ ମୁଣ୍ଡ ତ୍ରୟ ସ୍ପଷ୍ଟରୂପେ ଦେଖାଯାଉନାହିଁ । ମନ୍ଦିରସମ୍ମୁଖରେ ଅଷ୍ଟଭୁଜ ମହାଦେବ ଓ ନନ୍ଦୀଙ୍କର ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି ।

ସର୍ବନାଥଙ୍କ ମନ୍ଦିରର ଅନତିଦୂରରେ ଏକ ଅଶ୍ୱତ୍ଥ ବୃକ୍ଷମୂଳେ ବୁଦ୍ଧଦେବଙ୍କର ଧ୍ୟାନନିଷ୍ଠ ମୂର୍ତ୍ତି ନୟନଗୋଚର ହୁଏ । ମାୟାଦେବୀଙ୍କ ମନ୍ଦିର ନିକଟରେ ଶିବାଳିକ ପର୍ବତ ଅଛି । ତହିଁର ଶିଖର ଦେଶରେ ବିଲ୍ୱକେଶର ମହାଦେବ ଏକ ମନ୍ଦିରମଧ୍ୟରେ ବିରାଜମାନ କରୁଅଛନ୍ତି ।

---

## କନଖଲ ।

ହରିଦ୍ୱାରଠାରୁ ଦୁଇମାଇଲ ଦୂରରେ ଗଙ୍ଗାନଦୀତଟରେ କନଖଲ ଅବସ୍ଥିତ । ଏହା ଏକ ପ୍ରଧାନ ତୀର୍ଥ । ଏଠାରେ ଶ୍ରୀଦକ୍ଷେଶ୍ୱରଙ୍କ ମନ୍ଦିର ଓ ସତୀକୁଣ୍ଡ ଅଛି । ଗଙ୍ଗାଦେବୀ ହରିଦ୍ୱାରଠାରୁ ତ୍ରିଧାରରେ ପ୍ରବାହିତ ହୋଇ କନଖଲଠାରେ ଏକତ୍ରେ ମିଳି ଅଛନ୍ତି । ଯାହାକୁ ନୀଳଧାର କହନ୍ତି । ପ୍ରକୃତରେ ଜଳ ନୀଳବର୍ଣ୍ଣ ଦେଖାଯାଉଅଛି । ନୀଳଧାର ଘାଟରେ ସ୍ନାନ କରି ଲୋକ ଜୀବନ୍ମୁକ୍ତ ହୁଏ ।

ଦକ୍ଷପ୍ରଜାପତି କନଖଲରେ ଯଜ୍ଞାରମ୍ଭକରି ସମସ୍ତ ଦେବଗଣ, କନ୍ୟାବୃନ୍ଦ ଓ ମହାଦେବଙ୍କ ବ୍ୟତୀତ ଅନ୍ୟ ଜାମାତାମାନଙ୍କୁ ଆମନ୍ତ୍ରଣ

କରିଥିଲେ । ଶ୍ରୀମହାଦେବ ଦିଗମ୍ବର ଓ ଶ୍ମଶାନବାସୀ ଥିବାଯୋଗୁଁ ତାହାଙ୍କୁ ଓ କନ୍ୟା ସତୀଦେବୀଙ୍କୁ ନିମନ୍ତ୍ରଣ କରି ନ ଥିଲେ । ସତୀଦେବୀ ପିତାଙ୍କ ଯଜ୍ଞ ଓ ସହୋଦରା ଭଗ୍ନୀମାନଙ୍କୁ ଦେଖିବା ସକାଶେ ଉତ୍କଣ୍ଠିତା ହୋଇ ସ୍ୱାମୀଙ୍କ ବାରଣ ନ ମାନି ବିନା ଆମନ୍ତ୍ରଣରେ ଯଜ୍ଞ ସ୍ଥାନକୁ ଗମନ କରିଥିଲେ । ଦକ୍ଷ ପ୍ରଜାପତି ସତୀ ଦେବୀଙ୍କୁ ଅଭ୍ୟର୍ଥନା ନ କରି ମହାଦେବଙ୍କ ନିନ୍ଦା କରିବା ଦେଖି ପତିନିନ୍ଦା ଓ ନିଜାପମାନ ସହ୍ୟ କରି ନ ପାରି ରୋଷ ବେପାନ୍ୱିତା ହୋଇ ଜ୍ୱଳନ୍ତ ଯଜ୍ଞକୁଣ୍ଡରେ ପ୍ରବେଶ କଲେ । ମହାଦେବ ସତୀଙ୍କ ଦେହତ୍ୟାଗ ବାର୍ତ୍ତା ଶ୍ରବଣମାତ୍ରେ କ୍ରୋଧରେ ପ୍ରଜ୍ୱଳିତ ହୋଇ ତାହାଙ୍କ ଅଂଶାବତାର ବୀରଭଦ୍ରଙ୍କୁ ଯଜ୍ଞ ବିନାଶାର୍ଥ ପ୍ରେରଣ କଲେ । ବୀରଭଦ୍ର ଯଜ୍ଞ ସ୍ଥଳରେ ଉପସ୍ଥିତ ହୋଇ ଯଜ୍ଞ ବିନାଶ, ଋତ୍ୱିକମାନଙ୍କୁ ଯଥୋଚିତ ଦଣ୍ଡ ଓ ଦକ୍ଷ ପ୍ରଜାପତିଙ୍କର ମସ୍ତକ ଛେଦନ କରିଥିଲେ । ବ୍ରହ୍ମାଙ୍କ ପ୍ରାର୍ଥନାନୁସାରେ ମହାଦେବ ପ୍ରସନ୍ନ ହୋଇ ଦକ୍ଷ ପ୍ରଜାପତିଙ୍କୁ ପୁନର୍ଜୀବିତ କଲେ । ତତ୍ପରେ ଦକ୍ଷ ଶ୍ରୀମହାଦେବଙ୍କୁ ସ୍ତବଦ୍ୱାରା ସନ୍ତୁଷ୍ଟ କରି ଯଜ୍ଞ ସମାପନ କଲେ । ସେହି ସମୟଠାରୁ ମହାଦେବ ଦକ୍ଷେଶ୍ୱର ନାମ ଧାରଣ କରି ଏଠାରେ ପୂଜା ପାଉଅଛନ୍ତି ଓ ଯଜ୍ଞକୁଣ୍ଡ ସତୀକୁଣ୍ଡ ନାମ ଧାରଣ କରିଅଛି ।

---

## ହୃଷୀକେଶ ।

ହୃଷୀକେଶେ ତୁ ଯଃ କଶ୍ଚିଦ୍ବ୍ରହ୍ମକ୍ଷେତ୍ରେ ସୁପୁଣ୍ୟଦେ । ୨୧ ।
ଦୃଷ୍ଟ୍ୱା ଶ୍ରୀଭରତଂ ଦେବଂ ସ୍ନାତୋ ବୈ ଭକ୍ତିତତ୍ପରଃ ।
ମୁକ୍ତିଭାଗେ ଭବେତସ୍ତସ୍ୟ ନରନାଥୋ ଭବିଷ୍ୟତି । ୨୨ ।
ହୃଷୀକେଶାଶ୍ରମେ ପୁଣ୍ୟେ ତିଷ୍ଠନ୍ତି ସୁଧିୟଶ୍ଚ ଯେ ।
ହୃଷ୍ୟନ୍ତି ପିତରସ୍ତେଷାଂ ସର୍ବେ ବୈ ମୁକ୍ତିଭାଜନାଃ । ୨୩ ।
ସ୍କନ୍ଦପୁରାଣ, କେଦାର ଖଣ୍ଡ, ମାୟାକ୍ଷେତ୍ରମାହାତ୍ମ୍ୟ ଦ୍ୱିତୀୟ ଅଧ୍ୟାୟ ।

ହୃଷୀକେଶ ହରିଦ୍ୱାରଠାରୁ ୧୪ ମାଇଲ ଦୂରରେ ଅବସ୍ଥିତ । ମୁଖ୍ୟ ସ୍ଥାନଟିରେ ସତ୍ୟନାରାୟଣଙ୍କର ଶ୍ରୀବିଗ୍ରହ ଏକ ମନ୍ଦିର ମଧ୍ୟରେ ପ୍ରତିଷ୍ଠିତ ହୋଇଅଛନ୍ତି । ହୃଷୀକେଶ ଏକ କ୍ଷୁଦ୍ର ସହର । ସହରମଧ୍ୟରେ ଶ୍ରୀରାମଚନ୍ଦ୍ରଙ୍କର ଭ୍ରାତା ଭରତଙ୍କର ମୂର୍ତ୍ତି ଏକ ମନ୍ଦିରରେ ସ୍ଥାପିତ ହୋଇ ପୂଜା ପାଉଅଛନ୍ତି । ସହରର ପ୍ରାନ୍ତଭାଗରେ ଗଙ୍ଗାନଦୀକୂଳରେ ଶ୍ରୀରାମଚନ୍ଦ୍ର ଓ ସୀତାଦେବୀଙ୍କର ଶ୍ରୀବିଗ୍ରହଦ୍ୱୟ ଏକ ମନ୍ଦିରମଧ୍ୟରେ ବିରାଜମାନ କରୁଅଛନ୍ତି । ସମ୍ମୁଖରେ ସୀତାକୁଣ୍ଡ ନାମକ ଏକ କ୍ଷୁଦ୍ର ପୁଷ୍କରିଣୀ ଅଛି । ଏଠାରେ ଗଙ୍ଗାଦେବୀ ତ୍ରିବେଣୀ ନାମ ଧାରଣ କରି ପ୍ରବାହିତା । ତ୍ରିବେଣୀରେ ସ୍ନାନ, ଦାନ ଓ ତର୍ପଣ କରିବାକୁ ହୁଏ । ହରିଦ୍ୱାରଠାରୁ ହୃଷୀକେଶକୁ ଯିବା ଆସିବା ଗାଡି ଭଡ଼ା ପାଞ୍ଚ ଟଙ୍କା ପଡ଼ିଥିଲା ।

ହୃଷୀକେଶରୁ ଲଛମନ ଝୋଲା ତିନ ମାଇଲ ଦୂର । ସହରଠାରୁ ପ୍ରାୟ ଏକ ମାଇଲ ଦୂରରେ ଶତ୍ରୁଘ୍ନଙ୍କର ଶ୍ରୀମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି । ସେଠାରୁ କିଛି ଦୂରରେ ଏକ ମଠମଧ୍ୟରେ ଶ୍ରୀଶଙ୍କରାଚାର୍ଯ୍ୟଙ୍କ ଶ୍ରୀବିଗ୍ରହ ପ୍ରତିଷ୍ଠିତ ହୋଇଅଛନ୍ତି । ମଣ୍ଡପସଂଲଗ୍ନ ସ୍ତମ୍ଭମାନଙ୍କରେ, ଶିଳଶିର ଉପରିଭାଗରେ ଓ ଛାତର ନିମ୍ନ ଭାଗରେ ଶିକ୍ଷାପ୍ରଦ, ଜ୍ଞାନଗର୍ଭକ ଶ୍ଳୋକାବଳୀ ଲିପିବଦ୍ଧ ହୋଇଅଛି । ଲଛମନ ଝୋଲା ସେତୁ ପର୍ଯ୍ୟନ୍ତ ଯିବା ପୂର୍ବରୁ ଶ୍ରୀ ଲକ୍ଷ୍ମଣ ଜୀଉଙ୍କର ଶ୍ରୀ ବିଗ୍ରହଙ୍କୁ ଦର୍ଶନ କରିବାକୁ ହୁଏ । ଝୋଲାର ଅପର ପାରରେ ଶ୍ରୀ ନାରାୟଣଙ୍କର ବିଗ୍ରହ ପ୍ରତିଷ୍ଠିତ ହୋଇଅଛନ୍ତି । ନିକଟରେ ଅନ୍ୟାନ୍ୟ ଦେବତାମାନଙ୍କର ମନ୍ଦିର ଅଛି । ହୃଷୀକେଶଠାରୁ ଝୋଲାପର୍ଯ୍ୟନ୍ତ ବିସ୍ତୃତ ରାସ୍ତାଧାରରେ ଗଙ୍ଗାଦେବୀ କଳଧ୍ୱନି କରି ପ୍ରବାହିତା । ଗଙ୍ଗାଙ୍କର ଉଭୟ ତୀରରେ ସ୍ଥାନେ ସ୍ଥାନେ ସନ୍ନ୍ୟାସିମାନଙ୍କର ନିର୍ଜନ କୁଟୀର ପରିଲକ୍ଷିତ ହୁଏ । ଝୋଲାର ପ୍ରାରମ୍ଭରେ ଶ୍ରୀଲକ୍ଷ୍ମଣ ଜୀଉ ବିରାଜମାନ କରିଥିବାରୁ ଝୋଲାର ନାମ ଲଛମନ ଝୋଲା ହୋଇଅଛି । ଏଥିର ସବିଶେଷ ବିବରଣ ଉତ୍ତରାଞ୍ଚଳ ତୀର୍ଥଦର୍ଶନରେ ବର୍ଣ୍ଣିତ ହୋଇଅଛି ।

ହରିଦ୍ୱାର ଓ ଲକ୍ଷ୍ମଣଝୋଲା ନିକଟରେ ଶ୍ରଦ୍ଧାଳୁମାନେ ଗଙ୍ଗାଦେବୀଙ୍କ ବକ୍ଷରେ କିଛି ଖାଦ୍ୟଦ୍ରବ୍ୟ ନିକ୍ଷେପ କଲେ ବୃହଦାକାର ମତ୍ସ୍ୟସମୂହ କୌଣସି ଭୟାଶଙ୍କା ନ କରି ଏକତ୍ରିତ ହୋଇ ନିର୍ଭୟରେ ପ୍ରତିଦ୍ୱନ୍ଦ୍ୱିତା ସହିତ ତାହା ଭକ୍ଷଣ କରନ୍ତି । ଏଥିର ଦୃଶ୍ୟ ଅତି ମନୋହର ଅଟେ । ପୁଣ୍ୟକ୍ଷେତ୍ରରେ ଜୀବହିଂସା ନିଷେଧ ଥିବାରୁ ମତ୍ସ୍ୟସମୂହ ସ୍ୱଚ୍ଛନ୍ଦରେ କ୍ରୀଡ଼ା କରୁଅଛନ୍ତି ।

ଅକ୍ଟୋବର ମାସ ୧୨ ତାରିଖ ସକାଳେ ଆମ୍ଭେମାନେ ହରିଦ୍ୱାରରୁ ଲଛମନଝୋଲା ପର୍ଯ୍ୟନ୍ତ ଯାଇ ମଧ୍ୟସ୍ଥିତ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରି ସନ୍ଧ୍ୟାସମୟରେ ହରିଦ୍ୱାରକୁ ଆସି ଗଙ୍ଗାଦେବୀଙ୍କ ଆରତି ଦର୍ଶନ କଲୁଁ । ଝୋଲାସେତୁ ଆରମ୍ଭରେ ବଦ୍ରିନାରାୟଣ ୧୮୩ ମାଇଲ ଦୂରଥିବାର ଲେଖା ଏକ କାଷ୍ଠ ଫଳକରେ ଦେଖି ବଦ୍ରିନାରାୟଣଙ୍କ ଦର୍ଶନେଚ୍ଛା ପୋଷଣ କରି ପ୍ରତ୍ୟାଗମନ କରିଥିଲୁଁ ।

ଅକ୍ଟୋବର ମାସ ୧୩ ତାରିଖ ପୂର୍ବାହ୍ନ ଦଶଘଣ୍ଟା ସମୟରେ ଆମ୍ଭେମାନେ ହରିଦ୍ୱାରରୁ କୁରୁକ୍ଷେତ୍ରାଭିମୁଖେ ଯାତ୍ରାକଲୁଁ । କୁରୁକ୍ଷେତ୍ର ଷ୍ଟେସନରେ ରାତ୍ରରେ ଉପଯୁକ୍ତ ସୁବିଧାଜନକ ସ୍ଥାନ ନ ପାଇବା ଆଶଙ୍କାରେ ସେଠାକୁ ନ ଯାଇ ଅମ୍ବାଲା କ୍ୟାଣ୍ଟନମେଣ୍ଟ ଷ୍ଟେସନ ନିକଟବର୍ତ୍ତୀ ଏକ ଧର୍ମଶାଳାରେ ରହିଲୁଁ, କିନ୍ତୁ ଧର୍ମଶାଳା ସୁବ୍ୟବସ୍ଥିତରୂପେ ପରିଚାଳିତ ହେଉ ନ ଥିବାରୁ ରାତ୍ରରେ ନାନାବିଧ ଅସୁବିଧାରେ ପଡ଼ି କଷ୍ଟଭୋଗ କରିଥିଲୁଁ । ୧୪ ତାରିଖ ଭୋର ଅମ୍ବାଲାରୁ ଯାତ୍ରାକରି ସକାଳ ଆଠଘଣ୍ଟା ସମୟରେ କୁରୁକ୍ଷେତ୍ରରେ ପହଞ୍ଚି ଷ୍ଟେସନ ନିକଟବର୍ତ୍ତୀ ଏକ ଧର୍ମଶାଳାରେ ରହିଲୁଁ । ହରିଦ୍ୱାରଠାରୁ ଅମ୍ବାଲା ୧୦୧ ଓ ସେଠାରୁ କୁରୁକ୍ଷେତ୍ର ୨୬ ମାଇଲ ଦୂରରେ ଅବସ୍ଥିତ । ପ୍ରତ୍ୟେକର ଇଣ୍ଟର ଭଡ଼ା ଟ ୨।୵୯ ଓ ଅର୍ଦ୍ଧଟିକଟ ଭଡ଼ା ଟ ୨୵ ଦେବାକୁ ହେଲା ।

ଅମ୍ବାଲା ସହରର ଉତ୍ତରପାର୍ଶ୍ୱ ଦେଇ ପ୍ରବାହିତା ସରସ୍ୱତୀ ଓ ଦୃଷଦ୍ୱତୀ ନଦୀଦ୍ୱୟଙ୍କ ଦର୍ଶନେଚ୍ଛା ଥିଲେ ମଧ୍ୟ ତାହାର କୌଣସି ନିଦର୍ଶନ ମିଳିଲା

ନାହିଁ । ସିଟୀଷ୍ଟେସନ ଠାରେ ଉତ୍ତର ଥିଲେ ଦର୍ଶନଲାଭର ସମ୍ଭାବନା ଥିଲା ।

---

## କୁରୁକ୍ଷେତ୍ର ।

କୁରୁକ୍ଷେତ୍ର ପ୍ରଜାପତି ବ୍ରହ୍ମାଙ୍କର ଉତ୍ତରବେଦୀ ନାମେ ଅଭିହିତ । ଏହାର ଅନ୍ୟ ଏକ ନାମ ସମନ୍ତପଞ୍ଚକ । ପୂର୍ବକାଳରେ ଦେବତାମାନେ ଏଠାରେ ମହାଯଜ୍ଞ କରିଥିଲେ । "ଯେ କୌଣସି ଲୋକ ଏଠାରେ ପ୍ରାଣତ୍ୟାଗ କଲେ ସ୍ୱର୍ଗଲାଭ କରିବ" ଏହି କାମନାରେ ରାଜର୍ଷିଶ୍ରେଷ୍ଠ କୁରୁ ତପୋନିଷ୍ଠ ହୋଇ ବହୁକାଳ ପର୍ଯ୍ୟନ୍ତ ଏହି ସ୍ଥାନକୁ କର୍ଷଣ କରିଥିବାରୁ ଏହାର ନାମ କୁରୁକ୍ଷେତ୍ର ହେଲା । ଦେବରାଜ ଇନ୍ଦ୍ର କୁରୁଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଅଭୀଷ୍ଟ ବର ପ୍ରଦାନ କରିଥିଲେ । ଶୂଦ୍ରମାନଙ୍କ ପ୍ରତି ଦ୍ୱେଷାନ୍ୱିତା ସରସ୍ୱତୀ ନଦୀ ଏଠାରେ ଅଦୃଶ୍ୟ ହୋଇଥିବାରୁ ଏହାର ଅନ୍ୟ ନାମ ବିନଶନ ହେଲା । କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଜମଦଗ୍ନିଙ୍କୁ ଅନ୍ୟାୟରୂପେ ବଧ କରିବାରୁ ଶ୍ରୀ ପରଶୁରାମ ପିତାଙ୍କ ବଧରେ କ୍ରୋଧାନ୍ୱିତ ହୋଇ ଏକବିଂଶତିବାର ପୃଥିବୀ ନିଃକ୍ଷତ୍ରିୟା କଲେ ଓ ବିଜିତ ରାଜାମାନଙ୍କ ରୁଧିରରେ ପାଞ୍ଚଗୋଟି କୁଣ୍ଡ ପୂର୍ଣ୍ଣକରି ପିତୃଗଣଙ୍କୁ ତର୍ପଣ କରିଥିଲେ । ଉକ୍ତ ପଞ୍ଚକୁଣ୍ଡ ରାମହ୍ରଦ ନାମେ ଅଭିହିତ ହେଲା । ମହତ୍ ବ୍ରାହ୍ମଣମାନେ ଓ ନୃପାଦିରାଜନ୍ୟବୃନ୍ଦ ଏଠାରେ ମହାଯଜ୍ଞ କରିଥିଲେ । ଭାରତବର୍ଷ ମଧ୍ୟସ୍ଥ ତୀର୍ଥସମୂହ କୁରୁକ୍ଷେତ୍ରରେ ଏକତ୍ରିତ ହୋଇଥିବାରୁ ଏହାର ଅପର ନାମ 'ସନ୍ନିହିତ' ହୋଇଅଛି । ସୂର୍ଯ୍ୟୋପରାଗ କାଳେ ସ୍ନାନଦାନାଦି ଦ୍ୱାରା ମହତ୍ ଫଳଲାଭ ହୁଏ ।

ମହାଭାରତ, ବନପର୍ବ୍ବ ୮୩ ଓ ଶଲ୍ୟପର୍ବ୍ବ ୩୭ ଓ ୫୩ ଅଧ୍ୟାୟ ଦ୍ରଷ୍ଟବ୍ୟ

ତତୋ ଗଚ୍ଛେତ ରାଜେନ୍ଦ୍ର ! କୁରୁକ୍ଷେତ୍ରମଭିଷ୍ଟୁତମ୍ ।
ପାପେଭ୍ୟୋ ଯତ୍ର ମୁଚ୍ୟନ୍ତେ ଦର୍ଶନାତ୍ ସର୍ବ୍ବଜନ୍ତବଃ । ୧ ।

ଦକ୍ଷିଣେନ ସରସ୍ୱତ୍ୟା ଦୃଷଦ୍ୱତ୍ୟୁତ୍ତରେଣ ଚ ।
ଯେ ବସନ୍ତି କୁରୁକ୍ଷେତ୍ରେ ତେ ବସନ୍ତି ତ୍ରିପିଷ୍ଟପେ । ୪ ।
ତତୋ ରାମହ୍ରଦାନଗଚ୍ଛେତ୍ ତୀର୍ଥସେବୀ ସମାହିତଃ । ୨୬ ।
ତତ୍ର ରାମେଣ ରାଜେନ୍ଦ୍ର ! ତରସା ଦୀପ୍ତତେଜସା ।
କ୍ଷତ୍ରମୁତ୍ସାଦ୍ୟ ବୀରେଣ ହ୍ରଦାଃ ପଞ୍ଚ ନିବେଶିତାଃ । ୨୭ ।
ପୂରୟିତ୍ୱା ନରବ୍ୟାଘ୍ର ! ରୁଧିରେଣେତି ନଃ ଶ୍ରୁତଂ
ପିତରଃ ତର୍ପିତା ସର୍ବେ ତଥୈବ ପ୍ରପିତାମହାଃ । ୨୮ ।
ବ୍ରହ୍ମାଣାମପି ଲୋକାନାଂ କୁରୁକ୍ଷେତ୍ରଂ ବିଶିଷ୍ୟତେ । ୨୦୩ ।
ତରନ୍ତୁକାରନ୍ତୁକୟୋର୍ଯଦନ୍ତରଂ ରାମହ୍ରଦାନାଞ୍ଚ ମଚକ୍ରୁକସ୍ୟ ଚ
ଏତତ୍ କୁରୁକ୍ଷେତ୍ରସମନ୍ତପଞ୍ଚକଂ ପିତାମହସ୍ୟୋତ୍ତରବେଦିରୁଚ୍ୟତେ । ୨୦୮ ।

ମହାଭାରତ, ବନପର୍ବ୍ବ ୮୩ ଅଧ୍ୟାୟ ।

ତତୋ ବିନଶନଂ ରାଜନ୍ ଜଗାମାଥ ହଲାୟୁଧଃ ।
ଶୂଦ୍ରାଭୀରାନ୍ ପ୍ରତିଦ୍ୱେଷାତ୍ ଯତ୍ର ନଷ୍ଟା ସରସ୍ୱତୀ । ୧ ।
ଯସ୍ମାତ୍ ସା ଭରତଶ୍ରେଷ୍ଠ ଦ୍ୱେଷାନ୍ନଷ୍ଟା ସରସ୍ୱତୀ ।
ତସ୍ମାତ୍ତୃଷୟୋ ନିତ୍ୟଂ ପ୍ରାହୁର୍ବିନଶନେତି ହ । ୨ ।

ଶଲ୍ୟପର୍ବ୍ବ ୩୭ ଅଧ୍ୟାୟ ।

ପାଂଶବୋଽପି କୁରୁକ୍ଷେତ୍ରାଦ୍ବାୟୁନା ସମୁଦୀରିତାଃ ।
ଅପି ଦୁଷ୍କୃତକର୍ମ୍ମାଣଂ ନୟନ୍ତି ପରମାଂ ଗତିଂ । ୨୩ ।

ସୁରର୍ଷଭା ବ୍ରାହ୍ମଣସତ୍ତମାଶ୍ଚ ତଥା ନୃଗାଦ୍ୟା ନରଦେବମୁଖ୍ୟାଃ ।
ଇଷ୍ଟ୍ୱା ମହାର୍ହୈଃ କ୍ରତୁଭିର୍ନୃସିଂହ ସନ୍ତ୍ୟଜ୍ୟ ଦେହାନ୍ ସୁଗତିଂ ପ୍ରପନ୍ନାଃ । ୨୪

ଶଲ୍ୟପର୍ବ୍ବ ୫୩ ଅଧ୍ୟାୟ ।

ଆମ୍ଭେମାନେ ୧୪ ତାରିଖ ଅପରାହ୍ଣରେ ଭଦ୍ରକାଳୀ ଓ ତାହାଙ୍କ ମନ୍ଦିର ନିକଟବର୍ତ୍ତୀ କୁବେର କୁଣ୍ଡ, ଇନ୍ଦ୍ରଙ୍କ ମୂର୍ତ୍ତି ଓ ସ୍ଥାଣକାଲ୍ପା ସରସ୍ୱତୀଙ୍କୁ ଦର୍ଶନ କରିଥିଲୁଁ । କୁରୁକ୍ଷେତ୍ରର ଦକ୍ଷିଣରେ ସରସ୍ୱତୀ ଓ ଉତ୍ତରରେ

ଦୃଷଦ୍ୱତୀ ପ୍ରବାହିତା ହେଉଥିଲେ । ବର୍ତ୍ତମାନ କେବଳ ସରସ୍ୱତୀ ନଦୀ ସ୍ରୋତାକାରରେ ଦେଖାଯାଉଅଛନ୍ତି ।

ସରସ୍ୱତୀ ନଦୀ ସପ୍ତସ୍ରୋତାକାରରେ ଭାରତବର୍ଷ ମଧ୍ୟରେ ବିରାଜମାନ ହୋଇଅଛନ୍ତି ।

ସୁପ୍ରଭା କାଞ୍ଚନାକ୍ଷୀ ଚ ବିଶାଳା ଚ ମନୋରମା ।
ସରସ୍ୱତୀ ଓଘବତୀ ସୁରେଣୁର୍ବିମଳୋଦକା । ୪ ।

ବ୍ରହ୍ମାଙ୍କ ଯଜ୍ଞରେ ପୁଷ୍କର କ୍ଷେତ୍ରକୁ ଆହୂତା ସରସ୍ୱତୀ ସୁପ୍ରଭା ନାମ ଧାରଣ କରିଥିଲେ । ନୈମିଷକ୍ଷେତ୍ରନିବାସୀ ମୁନିମାନଙ୍କ ଯଜ୍ଞରେ ଆହୂତା ସରସ୍ୱତୀଙ୍କ ନାମ କାଞ୍ଚନାକ୍ଷୀ ହେଲା । ଗୟ-ଯଜ୍ଞରେ ହିମାଳୟପର୍ବତ-ପାର୍ଶ୍ୱରୁ ନିର୍ଗତା ସରସ୍ୱତୀ ବିଶାଳାଖ୍ୟା ପ୍ରାପ୍ତ ହେଲେ । ଉଦ୍ଦାଳକଙ୍କ ଯଜ୍ଞରେ ଉତ୍ତର କୋଶଳକୁ ଆହୂତା ସରସ୍ୱତୀଙ୍କର ନାମ ମନୋରମା ହେଲା । କୁରୁଙ୍କ ଯଜ୍ଞରେ କୁରୁକ୍ଷେତ୍ରକୁ ଆହୂତା ସରସ୍ୱତୀ ଓଘବତୀ ନାମ ଧାରଣ କଲେ । ଦକ୍ଷଯଜ୍ଞରେ କନଖଳକୁ ଆହୂତା ସରସ୍ୱତୀ ସୁରେଣୁ ନାମେ ଅଭିହିତା ହେଲେ । ବ୍ରହ୍ମାଙ୍କ ଯଜ୍ଞରେ ହୈମବନ୍ତ ଗିରିରେ ବିରାଜମାନା ସରସ୍ୱତୀ ବିମଳୋଦା ନାମ ଧାରଣ କଲେ ।

ଶଲ୍ୟପର୍ବ ୩୮ ଅଧ୍ୟାୟ ।

ଅକ୍ଟୋବର ମାସ ୧୫ ତାରିଖ ପ୍ରତ୍ୟୁଷେ ଗାତ୍ରୋତ୍ଥାନ କରି ଦ୍ୱୈପାୟନ ହ୍ରଦରେ ସ୍ନାନ ଓ ତର୍ପଣ କଲୁଁ ।

କୁରୁରାଜା ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ସହିତ ଯୁଦ୍ଧରେ ସମସ୍ତ ହରାଇ ପ୍ରାଣରକ୍ଷା ସକାଶେ ଦ୍ୱୈପାୟନ ହ୍ରଦରେ ଗୋପନ ଭାବେ ଅବସ୍ଥାନ କରିଥିଲେ । ପାଣ୍ଡବମାନେ ତାଙ୍କର ସନ୍ଧାନ ପାଇ ହ୍ରଦକୂଳରେ ଉପସ୍ଥିତ ହେଲେ । ମଧ୍ୟମ ପାଣ୍ଡବ ଭୀମଙ୍କର ତର୍ଜ୍ଜନ ଗର୍ଜ୍ଜନରେ ଉତ୍ତେଜିତ ହୋଇ ଦୁର୍ଯ୍ୟୋଧନ ହ୍ରଦରୁ ବାହାରି ଭୀମଙ୍କ ସହିତ ଗଦା ଯୁଦ୍ଧରେ ପ୍ରାଣ ହରାଇ

ଥିଲେ । ହ୍ରଦର ଦୈର୍ଘ୍ୟ ଏକ ମାଇଲ ଓ ବିସ୍ତାର ଅର୍ଦ୍ଧ ମାଇଲ ହେବ । ନିକଟବର୍ତ୍ତୀ ନଦୀରୁ ଶାଖାନାଳଦ୍ୱାରା ଜଳ ଆନୀତ ହୋଇ ହ୍ରଦକୁ ପୂର୍ଣ୍ଣ କରୁଅଛି । ଚତୁଃପାର୍ଶ୍ୱରେ ସ୍ଥାନେ ସ୍ଥାନେ ପ୍ରସ୍ତରନିର୍ମିତ ଘାଟ ଅଛି । ବ୍ରହ୍ମା ଯେଉଁ ସ୍ଥାନରେ ଯଜ୍ଞକୁଣ୍ଡ ସ୍ଥାପନ କରିଥିଲେ ତାହାକୁ ବ୍ରହ୍ମଘାଟ କହନ୍ତି । ପ୍ରତ୍ୟହ ଯୁଦ୍ଧାବସାନରେ ଯେଉଁଠାରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଉପବେଶନ କରି ପରଦିବସ ଯୁଦ୍ଧ କାର୍ଯ୍ୟ ସମ୍ବନ୍ଧେ 'ଆଲୋଚନା ଓ ମନ୍ତ୍ରଣା କରୁଥିଲେ ତାହାର ନାମ ବିଶ୍ରାମଘାଟ । ହ୍ରଦର ମଧ୍ୟସ୍ଥଳରେ ଦ୍ୱୀପାକାର ଏକ କ୍ଷୁଦ୍ର ମନ୍ଦିର ଅଛି । ଉକ୍ତ ମନ୍ଦିର ଦୁଇଗୋଟି ସେତୁ ଦ୍ୱାରା କୂଳସହିତ ଯୋଗ ହୋଇଅଛି । ଚନ୍ଦ୍ରକୂପ ତୀର୍ଥ ଦ୍ୱୀପର ଏକାଂଶରେ ବର୍ତ୍ତମାନ ।

ଭଗବାନଙ୍କ କଳାବତାର ପୃଥୁରାଜା ପିତା ବେଣରାଜାଙ୍କୁ ପୃଥୂଦକ ନାମକ କୁରୁକ୍ଷେତ୍ର ତୀର୍ଥରେ ସ୍ନାନ କରାଇ ଦ୍ୱିଜଶାପରୁ ମୁକ୍ତ କରାଇଥିଲେ । ବାମନ ପୁରାଣ ।

ହ୍ରଦର କିୟଦ୍ ଦୂରରେ ସ୍ଥାନେଶ୍ୱରଙ୍କର ମନ୍ଦିର ଅଛି । ତନ୍ମଧ୍ୟସ୍ଥିତ ଲିଙ୍ଗ ମୂର୍ତ୍ତିଙ୍କ ନିକଟରେ ଅହୋରାତ୍ର ଘୃତପ୍ରଦୀପ ଜଳୁଅଛି । ସମ୍ମୁଖରେ ଏକ ପୁଷ୍କରିଣୀ । ମନ୍ଦିରର ଚତୁର୍ଦ୍ଦିଗରେ ପୁରାତନ ସୌଧସମୂହର ଭଗ୍ନାବଶେଷ ସ୍ତୂପାକାରରେ ପଡ଼ିଅଛି । ଶ୍ରୀ ମହାଦେବଙ୍କ ନାମାନୁସାରେ ନଗରର ନାମ ସ୍ଥାନେଶ୍ୱର ହୋଇଅଛି । ପ୍ରବେଶ ଦ୍ୱାରସ୍ୱରୂପ ଏକ ପୁରାତନ ତୋରଣ ଦ୍ୱାର ପୂର୍ବ ଗୌରବ ହରାଇ ଦଣ୍ଡାୟମାନ ହୋଇଅଛି ।

ଦ୍ୱୈପାୟନ ହ୍ରଦର ଏକ ପାର୍ଶ୍ୱରେ ଭୀଷ୍ମଙ୍କର ଶରଶଯ୍ୟା ମନ୍ଦିର । ତନ୍ନିକଟରେ ଏକ କ୍ଷୁଦ୍ର ପୁଷ୍କରିଣୀ ଅଛି । ମହାବୀର ଅର୍ଜ୍ଜୁନ ଶରଦ୍ୱାରା ପୃଥିବୀ ଭେଦକରି ପାତାଳ ଗଙ୍ଗା ଭଗବତୀଙ୍କ ଜଳ ଆହରଣ ପୂର୍ବକ ଭୀଷ୍ମଙ୍କ ମୁଖରେ ଦେଇ ତାହାଙ୍କର ତୃଷା ନିବାରଣ କରିଥିଲେ ।

ଦ୍ୱୈପାୟନ ହ୍ରଦର ଅଳ୍ପ ଦୂରରେ ସର୍ବନାଥ ମହାଦେବ ଓ ଶ୍ରୀନାରାୟଣଙ୍କର ମନ୍ଦିର ଦୃଷ୍ଟ ଅଧିଷ୍ଠିତ । ନାରାୟଣଙ୍କର ମନ୍ଦିରସଂଲଗ୍ନ

ସୁବର୍ଣ୍ଣ ବାରଣ୍ଡାର ଭିତ୍ତିରେ ଶ୍ରୀକୃଷ୍ଣ ଓ ପଞ୍ଚପାଣ୍ଡବଙ୍କ ମୂର୍ତ୍ତି ସମୂହ ଓ ଅନ୍ୟ ଏକ ଭିତ୍ତିରେ ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି, କର୍ଣ୍ଣ ଓ ଜୟଦ୍ରଥ ପ୍ରଭୃତି ବୀରମାନଙ୍କର ମୂର୍ତ୍ତିସମୂହ ଅଙ୍କିତ ହୋଇଅଛି ।

ସ୍ଥାନେଶ୍ୱରଙ୍କର ମନ୍ଦିରଠାରୁ ପ୍ରାୟ ଏକ ମାଇଲ ଦୂରରେ ଭଦ୍ରକାଳୀଙ୍କ ମନ୍ଦିର ଅବସ୍ଥିତ ।

କୁରୁକ୍ଷେତ୍ରର ଭିନ୍ନ ଭିନ୍ନ ସ୍ଥାନରେ ମହାରଥୀମାନଙ୍କର ପତନ ସ୍ଥାନ ପଣ୍ଡାମାନେ ଦେଖାଉଅଛନ୍ତି, କିନ୍ତୁ ତାହାର କୌଣସି ନିଦର୍ଶନ ନାହିଁ । ପାଣ୍ଡବମାନେ ବନବାସ ସମୟରେ କୁରୁକ୍ଷେତ୍ରର ଏକାଂଶରେ କିଛିକାଳ ବାସ କରିଥିଲେ । ସେହି ସ୍ଥାନର ନାମ କାମ୍ୟବନ । ଏକଦା ସୂର୍ଯ୍ୟୋପରାଗ ସମୟରେ ନାନା ଦିଗ୍ ଦେଶାଗତ ରାଜନ୍ୟମଣ୍ଡଳୀ, କୁରୁପାଣ୍ଡବଗଣ, ଯାଦବମାନଙ୍କ ସହିତ ଶ୍ରୀକୃଷ୍ଣ, ନନ୍ଦ ଓ ଯଶୋଦାଙ୍କ ସହିତ ଗୋପ ଓ ଗୋପୀବୃନ୍ଦ ଓ ନାରଦାଦି ମହର୍ଷିମାନେ କୁରୁକ୍ଷେତ୍ରରେ ସମବେତ ହୋଇଥିଲେ । ବହୁକାଳପରେ ବ୍ରଜାଙ୍ଗନାମାନେ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ କରି ତାହାଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତହୋଇ ପରମପ୍ରୀତି ଲାଭ କଲେ ।

କୁରୁକ୍ଷେତ୍ରରେ ରାଜା, ସମ୍ରାଟ ଓ ସୁବିଖ୍ୟାତ ମହାରଥୀମାନେ ଭିନ୍ନ ସମୟେ ଯୁଦ୍ଧରେ ଲିପ୍ତ ହୋଇ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଅଛନ୍ତି ଓ ତଦ୍ଦ୍ୱାରା ଭାରତର ଭାଗ୍ୟଚକ୍ର ପରିବର୍ତ୍ତନ ହୋଇଅଛି ।

ଏଠାରେ ଭୀଷ୍ମ ଓ ପରଶୁରାମଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇ ଭୀଷ୍ମ ଜୟୀ ହୋଇଥିଲେ । ତତ୍ପରେ କୌରବ ଓ ପାଣ୍ଡବମାନଙ୍କର ସେମହଣ ଯୁଦ୍ଧରେ ଭାରତର ରାଜନ୍ୟବର୍ଗ ପ୍ରାୟ ଲୋପ ହେଲେ । ଏହି ଯୁଦ୍ଧ ଭାରତର ପତନଦ୍ୱାର ଉଦ୍ଘାଟନ କରିଥିବାର ମତ ଆଧୁନିକ ବିଜ୍ଞମଣ୍ଡଳୀ ପ୍ରକାଶ କରନ୍ତି ।

## ଦିଲ୍ଲୀ ।

୧୧୯୧ ଖ୍ରୀଷ୍ଟାବ୍ଦରେ ହିନ୍ଦୁମାନଙ୍କର ଶେଷ ସ୍ୱାଧୀନ ରାଜା ପୃଥ୍ୱୀରାଜ ମହମ୍ମଦ ଘୋରିଙ୍କ ସହିତ ସ୍ଥାନେଶ୍ୱରଠାରେ ଘୋର ଯୁଦ୍ଧରେ ଲିପ୍ତ ହୋଇ ପ୍ରଥମେ ଜୟଲାଭ କରିଥିଲେ, କିନ୍ତୁ ୧୧୯୩ ଖ୍ରୀଷ୍ଟାବ୍ଦରେ ପରାଜିତ ହୋଇ ପ୍ରାଣ ହରାଇଲେ । ତାହାଙ୍କ ସହିତ ହିନ୍ଦୁମାନଙ୍କର ସ୍ୱାଧୀନତା ଚିରକାଳ ସକାଶେ ଲୁପ୍ତ ହେଲା ।

୧୫୨୬ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ବାବର ମେୱାରାଧିପତି ସଂଗ୍ରାମସିଂହଙ୍କ ସହିତ ମିଳିତ ହୋଇ ପଠାଣମାନଙ୍କର ଶେଷ ରାଜା ଇବ୍ରାହିମ-ଲୋଦିଙ୍କୁ ସ୍ଥାନେଶ୍ୱର ନିକଟବର୍ତ୍ତୀ ପାଣିପଥ ଠାରେ ଘୋର ଯୁଦ୍ଧରେ ପରାସ୍ତ କରିଥିଲେ । ସେହି ସମୟରୁ ପଠାଣ ରାଜତ୍ୱ ଶେଷ ହେଲା ।

୧୫୫୬ ଖ୍ରୀଷ୍ଟାବ୍ଦରେ ଆକ୍‌ବର ନାବାଳକାବସ୍ଥାରେ ତାହାଙ୍କର ରକ୍ଷକ ବେରାମ୍‌ଙ୍କ ସହିତ ଏକଯୋଗ ହୋଇ ପାଣିପଥ ଠାରେ ହେମୁଙ୍କୁ ପରାସ୍ତ କରି ମୋଗଲ ସାମ୍ରାଜ୍ୟ ଦୃଢ଼ୀଭୂତ କଲେ ।

୧୭୬୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନଙ୍କ ସହିତ ଆଫଗାନିସ୍ଥାନର ଅମୀର ଅହାମେଦସାହାଦୁରାନିଙ୍କର ଘୋରତର ଯୁଦ୍ଧ ହୋଇଥିଲା. ମରହଟ୍ଟାମାନେ ସମ୍ପୂର୍ଣ୍ଣରୂପେ ପରାସ୍ତ ହେଲେ, ତହିଁ ସଙ୍ଗେ ସେମାନଙ୍କର ଭାରତ ସମ୍ରାଟ ହେବାର ଆଶାଲତା ସମୂଳେ ଛିନ୍ନ ହେଲା ଓ ହିନ୍ଦୁମାନେ ଚିରକାଳ ସକାଶେ ସ୍ୱାଧୀନତା ହରାଇଲେ ।

---

## ଦିଲ୍ଲୀ ।

ଅକ୍ଟୋବର ମାସ ତା ୧୫ ରବି ପୂର୍ବାହ୍ନ ଆଠଘଣ୍ଟା ବେଳେ ଆମ୍ଭେମାନେ କୁରୁକ୍ଷେତ୍ରରୁ ଦିଲ୍ଲୀ ଯାତ୍ରା କଲୁଁ । କୁରୁକ୍ଷେତ୍ରଠାରୁ ଦିଲ୍ଲୀ ୧୭ ମାଇଲ ଦୂର । ପ୍ରତ୍ୟେକେ ଇଣ୍ଟର ଟ ।୭ ଓ ଥାର୍ଡ କ୍ଲାସ ଭଡ଼ା ଟ୧୪୩ ହିସାବେ ପଡ଼ିଥିଲା । କୁମାରପୂର୍ଣ୍ଣିମା ରାତ୍ର ଚନ୍ଦ୍ରଗ୍ରହଣ ହୋଇଥିବାରୁ

ଶେଷ ସ୍ୱପ୍ନରେ ମୋକ୍ଷ ସମସ୍ତେ ଆମ୍ଭମାନେ ଯମୁନାରେ ସ୍ନାନ କରି ତତ୍ ଦେଶରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ, ମହାଦେବ ଓ କାଳୀଠାକୁରାଣୀଙ୍କୁ ଦର୍ଶନ କରିଥିଲୁଁ ।

ଦିଲ୍ଲୀନଗର, ପୁଣ୍ୟତୋୟା ଯମୁନାନଦୀଙ୍କର ପଶ୍ଚିମତୀରରେ ଅବସ୍ଥିତ । ଆବହମାନ କାଳରୁ ଏହି ନଗର ହିନ୍ଦୁ ରାଜାମାନଙ୍କର ରାଜଧାନୀ ଥିଲା । ମୁସଲମାନଙ୍କର ରାଜତ୍ୱ ସମୟରେ ଏହା ପରିତ୍ୟକ୍ତ ହେଲା । ମୋଗଲ୍‌ସମ୍ରାଟ ହୁମାୟୁନ୍ ଏଠାରେ ପୁନଶ୍ଚ ରାଜଧାନୀ ସ୍ଥାପନ କଲେ । ଇଂରେଜମାନଙ୍କ ରାଜତ୍ୱ କାଳରେ ପୁନଃ ପରିତ୍ୟକ୍ତ ହେଲା । ସମ୍ରାଟ ପଞ୍ଚମ ଜର୍ଜ ୧୯୧୧ ମସିହା ଡିସେମ୍ବର ମାସ ତା ୧୧ ରିଖରେ ଏଠାରେ ରାଜଧାନୀ ସ୍ଥାପନ କରି ସିଂହାସନାରୋହଣ କଲେ । ରାଜପ୍ରତିନିଧି, ତାହାଙ୍କର ମନ୍ତ୍ରିବର୍ଗ ଓ କର୍ମଚାରୀମାନଙ୍କ ସକାଶେ ଏକ ସୁବିସ୍ତୀର୍ଣ୍ଣ କ୍ଷେତ୍ରରେ ସୁରମ୍ୟ ସୌଧାବଳି ନିର୍ମିତ ହେଉଅଛି ।

ଦିଲ୍ଲୀର ଏକାଂଶରେ କୌରବମାନଙ୍କର ରାଜଧାନୀ ହସ୍ତିନାପୁର ସ୍ଥାପିତ ହୋଇଥିଲା । ତାହାର କିଛି ଦୂରରେ ପାଣ୍ଡବମାନେ ସେମାନଙ୍କର ରାଜଧାନୀ ଇନ୍ଦ୍ରପ୍ରସ୍ଥନଗରୀ ସ୍ଥାପନ କଲେ । ବର୍ତ୍ତମାନ ଦୁଇ ସ୍ଥାନରେ, ପ୍ରାସାଦସମୂହର ଭଗ୍ନାବଶେଷ ସ୍ତୂପାକାରରେ ପଡ଼ିଅଛି ।

ମୋଗଲ ସମ୍ରାଟମାନଙ୍କ ରାଜତ୍ୱ ସମୟରେ ଦିଲ୍ଲୀ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଯେଉଁ ଭାଗରେ କୌରବ ଓ ପାଣ୍ଡବମାନଙ୍କର ରାଜଧାନୀ ଥିଲା ତାହାକୁ ପୁରାତନ ଦିଲ୍ଲୀ ଓ ସମ୍ରାଟ ସାଜାହାନଙ୍କଦ୍ୱାରା ନିର୍ମିତ ସହରକୁ ନୂତନ ଦିଲ୍ଲୀ କହୁଥିଲେ । ଇଂରେଜ ବାହାଦୁରଙ୍କର ରାଜଧାନୀ ଏହି ଦୁଇସ୍ଥାନର ମଧ୍ୟ ସ୍ଥଳରେ ନିର୍ମିତ ହେଉଅଛି ।

ସମ୍ରାଟ ସାଜାହାନ ନୂତନ ଦିଲ୍ଲୀର ଏକ ପ୍ରାନ୍ତରେ ଲୋହିତ ପ୍ରସ୍ତର ନିର୍ମିତ ଉଚ୍ଚ ପ୍ରାଚୀରବେଷ୍ଟିତ ଏକ ସୁଦୃଢ଼ ଦୁର୍ଗ ନିର୍ମାଣ କରାଇଥିଲେ ।

ପ୍ରାଚୀରର ଅନ୍ୟ ଦିଗରେ ବାର ଗୋଟି ସିଂହଦ୍ୱାର ଓ ଦୁଇଗୋଟି ବୃହତ୍ ତୋରଣଦ୍ୱାର ନିର୍ମିତ ହୋଇଥିଲା । ଦୁର୍ଗର ବହିଃସ୍ଥ ଦିଗରେ ତନ୍ନିକଟବର୍ତ୍ତୀ ସହରମାନଙ୍କ ନାମାନୁସାରେ ଦ୍ୱାର ସମୂହର ନାମକରଣ ହୋଇଥିଲା । ଯଥା, ଆଗ୍ରା ଗେଟ୍, ଆଲ୍ଲାହାବାଦ୍-ଗେଟ୍ ଅଜମିର ଗେଟ୍, ଇତ୍ୟାଦି । ଦୁର୍ଗର ଏକପାର୍ଶ୍ୱରେ ଯମୁନାନଦୀ ପ୍ରବାହିତା । ଦୁର୍ଗ ମଧ୍ୟରେ ଦେଓୟାନିଆମ୍, ଦେଓୟାନିଖାସ୍, ମୋତି ମସ୍‌ଜିଦ୍, ସାମାନବୁରୁଜ, ରଙ୍ଗମହଲ, ପ୍ରଭୃତି ମନୋହର ରାଜପ୍ରାସାଦାବଳୀ ନିର୍ମିତ ହୋଇ ଦୁର୍ଗର ଶ୍ରୀବୃଦ୍ଧି କରୁଥିଲା ।

ଦେଓୟାନିଆମ୍ ପ୍ରାସାଦ ସ୍ତମ୍ଭର ନିମ୍ନାଂଶ ଓ ଉଦ୍ଭିଦମାନଙ୍କ ଗାଛ, ଫୁଲ, ମାଳା, ମୋତିମାଣିକ୍ୟାଦି ପ୍ରସ୍ତରଚୟରେ ଖଚିତ ହୋଇ ପରମ ଶୋଭା ଧାରଣ କରିଥିଲା, କିନ୍ତୁ ଦୁର୍ଭାଗ୍ୟବଶତଃ ସେ ସମସ୍ତ ଅପସାରିତ ହୋଇ, ତତ୍ପରିବର୍ତ୍ତେ ନକଲି କାଚ ଜଡ଼ିତ ହୋଇଅଛି । ପ୍ରାସାଦର ସମ୍ମୁଖଭାଗରେ ଜଗଦ୍‌ବିଖ୍ୟାତ ମୟୂରସିଂହାସନ ସ୍ଥାପିତ ହୋଇଥିଲା । ସମ୍ରାଟ ସାଜାହାନ ଉକ୍ତ ସିଂହାସନାରୋହଣ କରି ରାଜକାର୍ଯ୍ୟ ପର୍ଯ୍ୟାଲୋଚନା କରୁଥିଲେ । ସିଂହାସନ ସମ୍ମୁଖରେ ମର୍ମର ପ୍ରସ୍ତର ନିର୍ମିତ ଏକ ଚତ୍ୱରରେ ଉପବେଶନ କରି ଉଜିରମାନେ ପ୍ରଜାମାନଙ୍କଠାରୁ ଆବେଦନ ପତ୍ର ଗ୍ରହଣ କରୁଥିଲେ । ତତ୍ପରେ ସେ ସମସ୍ତ ସମ୍ରାଟଙ୍କ ନିକଟରେ ପେଶ ହେଉଥିଲା । ୧୭୩୮ ଖ୍ରୀଷ୍ଟାବ୍ଦରେ ନାଦରସାହା ଦିଲ୍ଲୀନଗର ଲୁଣ୍ଠନ କରି ମୟୂରସିଂହାସନ ଓ ମହାର୍ଘ ସୁପ୍ରସିଦ୍ଧ କୋହିନୂର ନାମକ ବୃହତ୍ ହୀରକଖଣ୍ଡ ସ୍ୱୀୟ ରାଜଧାନୀ ପ୍ରତିସ୍ଥାକୁ ନେଇଯାଇଥିଲେ ।

ଦେଓୟାନିଆମ୍ ପ୍ରାସାଦର ପଶ୍ଚାଦ୍‌ଭାଗରେ ଶ୍ୱେତ ପ୍ରସ୍ତର-ନିର୍ମିତ ମନୋହର ସୌଧାବଳୀ ପରିମଣ୍ଡିତ ହୋଇ ମଧ୍ୟସ୍ଥଳରେ ଦେଓୟାନିଖାସ୍ ପ୍ରାସାଦ ସ୍ଥାପିତ ହୋଇଥିଲା । ଏହାର ଚାରି ପାଖ ଖୋଲା । ପ୍ରସ୍ତରନିର୍ମିତ କାରୁକାର୍ଯ୍ୟଯୁକ୍ତ ଗବାକ୍ଷ ଓ ଦ୍ୱାରସମୂହ

ଶେଷ ଘାଟରେ ମୋକ୍ଷ ସମସ୍ତେ ଆମ୍ଭମାନେ ଯମୁନାରେ ସ୍ନାନ କରି ଉକ୍ତ ଦେଶରେ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ, ମହାଦେବ ଓ କାଳୀଠାକୁରାଣୀଙ୍କୁ ଦର୍ଶନ କରିଥିଲୁଁ ।

ଦିଲ୍ଲୀନଗର, ପୁଣ୍ୟତୋୟା ଯମୁନାନଦୀଙ୍କର ପଶ୍ଚିମତୀରରେ ଅବସ୍ଥିତ । ଆବହମାନ କାଳରୁ ଏହି ନଗର ହିନ୍ଦୁ ରାଜାମାନଙ୍କର ରାଜଧାନୀ ଥିଲା । ମୁସଲମାନଙ୍କର ରାଜତ୍ୱ ସମୟରେ ଏହା ପରିତ୍ୟକ୍ତ ହେଲା । ମୋଗଲ୍‌ସମ୍ରାଟ ହୁମାୟୁନ୍ ଏଠାରେ ପୁନଶ୍ଚ ରାଜଧାନୀ ସ୍ଥାପନ କଲେ । ଇଂରେଜମାନଙ୍କ ରାଜତ୍ୱ କାଳରେ ପୁନଃ ପରିତ୍ୟକ୍ତ ହେଲା । ସମ୍ରାଟ ପଞ୍ଚମ ଜର୍ଜ ୧୯୧୧ ମସିହା ଡିସେମ୍ବର ମାସ ତା ୧୧ ରିଖରେ ଏଠାରେ ରାଜଧାନୀ ସ୍ଥାପନ କରି ସିଂହାସନାରୋହଣ କଲେ । ରାଜପ୍ରତିନିଧି, ତାହାଙ୍କର ମନ୍ତ୍ରିବର୍ଗ ଓ କର୍ମଚାରୀମାନଙ୍କ ସକାଶେ ଏକ ସୁବିସ୍ତୀର୍ଣ୍ଣ କ୍ଷେତ୍ରରେ ସୁରମ୍ୟ ସୌଧାବଳୀ ନିର୍ମିତ ହେଉଅଛି ।

ଦିଲ୍ଲୀର ଏକାଂଶରେ କୌରବମାନଙ୍କର ରାଜଧାନୀ ହସ୍ତିନାପୁର ସ୍ଥାପିତ ହୋଇଥିଲା । ତାହାର କିଛି ଦୂରରେ ପାଣ୍ଡବମାନେ ସେମାନଙ୍କର ରାଜଧାନୀ ଇନ୍ଦ୍ରପ୍ରସ୍ଥନଗରୀ ସ୍ଥାପନ କଲେ । ବର୍ତ୍ତମାନ ଦୁଇ ସ୍ଥାନରେ ପ୍ରାସାଦସମୂହର ଭଗ୍ନାବଶେଷ ସ୍ତୂପାକାରରେ ପଡ଼ିଅଛି ।

ମୋଗଲ ସମ୍ରାଟମାନଙ୍କ ରାଜତ୍ୱ ସମୟରେ ଦିଲ୍ଲୀ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଯେଉଁ ଭାଗରେ କୌରବ ଓ ପାଣ୍ଡବମାନଙ୍କର ରାଜଧାନୀ ଥିଲା ତାହାକୁ ପୁରାତନ ଦିଲ୍ଲୀ ଓ ସମ୍ରାଟ ସାଜାହାନଙ୍କଦ୍ୱାରା ନିର୍ମିତ ସହରକୁ ନୂତନ ଦିଲ୍ଲୀ କହୁଥିଲେ । ଇଂରେଜ ବାହାଦୁରଙ୍କର ରାଜଧାନୀ ଏହି ଦୁଇସ୍ଥାନର ମଧ୍ୟସ୍ଥଳରେ ନିର୍ମିତ ହେଉଅଛି ।

ସମ୍ରାଟ ସାଜାହାନ ନୂତନ ଦିଲ୍ଲୀର ଏକ ପ୍ରାନ୍ତରେ ଲୋହିତ ପ୍ରସ୍ତର ନିର୍ମିତ ଉଚ୍ଚ ପ୍ରାଚୀରବେଷ୍ଟିତ ଏକ ସୁଦୃଢ଼ ଦୁର୍ଗ ନିର୍ମାଣ କରାଇଥିଲେ ।

ପ୍ରାଚୀରର ଭିନ୍ନ ଦିଗରେ ଚାରି ଗୋଟି ସିଂହଦ୍ୱାର ଓ ଦୁଇଗୋଟି ବୃହତ୍ ତୋରଣଦ୍ୱାର ନିର୍ମିତ ହୋଇଥିଲା । ଦୁର୍ଗର ଭିନ୍ନ ଦିଗରେ ବହୁଦୂରବର୍ତ୍ତିତ ସହରମାନଙ୍କ ନାମାନୁସାରେ ଦ୍ୱାର ସମୂହର ନାମକରଣ ହୋଇଥିଲା । ଯଥା ଆଗ୍ରା ଗେଟ୍, ଆଲ୍ଲାହାବାଦ-ଗେଟ୍ ଅଜମିର ଗେଟ୍, ଇତ୍ୟାଦି । ଦୁର୍ଗର ଏକପାର୍ଶ୍ୱରେ ଯମୁନାନଦୀ ପ୍ରବାହିତା । ଦୁର୍ଗ ମଧ୍ୟରେ ଦେଓ୍ୟାନିଆମ୍, ଦେଓ୍ୟାନିଖାସ୍, ମୋତି ମସ୍‌ଜିଦ୍, ଷାମାନବୁରୁଜ୍, ରଙ୍ଗମହଲ, ପ୍ରଭୃତି ମନୋହର ରାଜପ୍ରାସାଦାବଳି ନିର୍ମିତ ହୋଇ ଦୁର୍ଗର ଶ୍ରୀବୃଦ୍ଧି କରୁଥିଲା ।

ଦେଓ୍ୟାନିଆମ୍ ପ୍ରାସାଦ ସ୍ତମ୍ଭର ନିମ୍ନାଂଶ ଓ ଭିତ୍ତିମାନଙ୍କ ଗାତ୍ର ହୀରା, ନୀଳା, ମୋତି ମାଣିକ୍ୟାଦି ପ୍ରସ୍ତରରେ ଖଚିତ ହୋଇ ପରମ ଶୋଭା ଧାରଣ କରିଥିଲା, କିନ୍ତୁ ଦୁର୍ଭାଗ୍ୟବଶତଃ ସେ ସମସ୍ତ ଅପସାରିତ ହୋଇ, ତତ୍ପରିବର୍ତ୍ତରେ ନକଲି କାଚ ଜଡ଼ିତ ହୋଇଅଛି । ପ୍ରାସାଦର ସମ୍ମୁଖଭାଗରେ ଜଗତ୍‌ବିଖ୍ୟାତ ମୟୂରସିଂହାସନ ସ୍ଥାପିତ ହୋଇଥିଲା । ସମ୍ରାଟ ସାଜାହାନ ଉକ୍ତ ସିଂହାସନାରୋହଣ କରି ରାଜକାର୍ଯ୍ୟ ପର୍ଯ୍ୟାଲୋଚନା କରୁଥିଲେ । ସିଂହାସନ ସମ୍ମୁଖରେ ମର୍ମର ପ୍ରସ୍ତର ନିର୍ମିତ ଏକ ଚତ୍ୱରରେ ଉପବେଶନ କରି ଉଜିରମାନେ ପ୍ରଜାମାନଙ୍କଠାରୁ ଆବେଦନ ପତ୍ର ଗ୍ରହଣ କରୁଥିଲେ । ତତ୍ପରେ ସେ ସମସ୍ତ ସମ୍ରାଟଙ୍କ ନିକଟରେ ପେଶ ହେଉଥିଲା । ୧୭୩୮ ଖ୍ରୀଷ୍ଟାବ୍ଦରେ ନାଦିରସାହା ଦିଲ୍ଲୀନଗରୀ ଲୁଣ୍ଠନ କରି ମୟୂରସିଂହାସନ ଓ ମହାର୍ଘ ସୁପ୍ରସିଦ୍ଧ କୋହିନୂର ନାମକ ବୃହତ୍ ହୀରକଖଣ୍ଡ ସ୍ୱୀୟ ରାଜଧାନୀ ପ୍ରହିସ୍ୱାକୁ ନେଇଯାଇଥିଲେ ।

ଦେଓ୍ୟାନିଆମ୍ ପ୍ରାସାଦର ପଶ୍ଚାଦ୍‌ଭାଗରେ ଶ୍ୱେତ ପ୍ରସ୍ତର-ନିର୍ମିତ ମନୋହର ସୌଧାବଳି ବିମଣ୍ଡିତ ହୋଇ ମଧ୍ୟସ୍ଥଳରେ ଦେଓ୍ୟାନିଖାସ୍ ପ୍ରାସାଦ ସ୍ଥାପିତ ହୋଇଥିଲା । ଏହାର ତିନ ପାଖ ଖୋଲା । ପ୍ରସ୍ତରନିର୍ମିତ କାରୁକାର୍ଯ୍ୟଯୁକ୍ତ ଗବାକ୍ଷ ଓ ଦ୍ୱାରସମୂହ

ଯମୁନାନଦୀର ସମ୍ମୁଖୀନ ହୋଇ ଶୀତଳ ବାୟୁସେବନର ପଥ ଉନ୍ମୁକ୍ତ କରିଥିଲା । ପ୍ରାସାଦର ସ୍ତମ୍ଭସମୂହ ଓ ଗୃହର ନିମ୍ନଭାଗ ସ୍ୱର୍ଣ୍ଣ-ରତ୍ନାଦିରେ ଜଡ଼ିତ ହୋଇ ମନୋହର ଶୋଭା ଧାରଣ କରିଥିଲା । କାଳକ୍ରମେ ସେ ସବୁ ଅପସାରିତ ହୋଇଅଛି । ପ୍ରାସାଦର ଉତ୍ତରାଂଶରେ ସ୍ନାନାଗାର ବିଦ୍ୟମାନ । ଏହାର ଭିତ୍ତି ଓ ଛାତ କାଚଦ୍ୱାରା ନିର୍ମିତ ସ୍ନାନ ସମୟରେ ନିଜର ପ୍ରତିମୂର୍ତ୍ତି ଦେଖିବା ଉଦ୍ଦେଶ୍ୟରେ ଏହିରୂପ ଗଠନ ହୋଇଥିଲା ।

ଦେଓ୍ୟାନଆମ୍‌ର ଏକପାର୍ଶ୍ୱରେ ରାଣୀମହଲ ତତ୍ସଂଲଗ୍ନରେ ସମ୍ରାଟଙ୍କର ଶୟନକକ୍ଷ । ସ୍ନାନାର୍ଥେ ମର୍ମରପ୍ରସ୍ତରରେ ଜଳାଧାର ନିର୍ମିତ ହୋଇ ଗୋଟିଏ ଉଷ୍ଣଜଳ ପ୍ରଣାଳୀଦ୍ୱାରା ଓ ଅନ୍ୟଟି ଶୀତଳ ଜଳ ପ୍ରଣାଳୀଦ୍ୱାରା ଯୋଜିତ ହୋଇଥିଲା । ସ୍ନାନାର୍ଥୀ ସ୍ୱଇଚ୍ଛାକ୍ରମେ ଉଷ୍ଣ କିମ୍ବା ଶୀତଳ ଜଳପ୍ରଣାଳୀର ମୁଖ ଉଦ୍ଘାଟନ କରି ସ୍ନାନ କରୁଥିଲେ । ଏକ ଜଳାଧାରର ନିମ୍ନଭାଗ ପ୍ରସ୍ଫୁଟିତ ପଦ୍ମାକାରରେ ନିର୍ମିତ ହୋଇଅଛି । କେତେକ ଜଳାଧାର ସୁବାସିତ ଜଳ ଓ ସୁଗନ୍ଧ ଅତରରେ ପୂର୍ଣ୍ଣ ହେଉଥିଲା । ସ୍ନାନାଗାର ନିକଟରେ ମୋତିମସ୍‌ଜିଦ୍‌ ସ୍ଥାପିତ ହୋଇଥିଲା । ବେଗମମାନେ ସ୍ନାନ ଶେଷରେ ଓ ସାୟାହ୍ନରେ ସେଠାରେ ଉପାସନା କରୁଥିଲେ ।

ଦୁର୍ଗମଧ୍ୟସ୍ଥିତ ଏକ ପ୍ରାସାଦରେ ସମ୍ରାଟମାନଙ୍କର ପ୍ରତିମୂର୍ତ୍ତି ଓ ସେମାନଙ୍କର ବ୍ୟବହୃତ ପୋଷାକ ଓ ଅସ୍ତ୍ର ଶସ୍ତ୍ରସମୂହ ସଂଗୃହୀତ ହୋଇ ରହିଅଛି ।

ଦୁର୍ଗର ପ୍ରବେଶଦ୍ୱାରରେ ଶ୍ୱେତାଙ୍ଗ ସୈନିକ ପୁରୁଷମାନେ ପ୍ରହରୀ ଅଛନ୍ତି । ଦ୍ୱାରନିକଟରେ ଦୁର୍ଗପ୍ରବେଶର ଅନୁମତି ପତ୍ର ମିଳେ । ବାହାର ପ୍ରାଚୀର ବ୍ୟତୀତ ଭିତରେ ଅନ୍ୟ ଏକ ପ୍ରାଚୀର ଅଛି । ଦ୍ୱିତୀୟ ପ୍ରାଚୀର ପ୍ରବେଶଦ୍ୱାର ସଂଲଗ୍ନ ବୃହତ୍ କକ୍ଷର ଉଭୟ

ପାର୍ଶ୍ୱନିର୍ମିତ ବାରଣ୍ଡାଦ୍ୱୟରେ ଆବଶ୍ୟକୀୟ ନାନାବିଧ ଦ୍ରବ୍ୟ ବିକ୍ରୟ ହେଉଅଛି । ଦୁର୍ଗର ଏକାଂଶରେ ନୂତନ ଅଟ୍ଟାଳିକାସମୂହ ନିର୍ମିତ ହୋଇ ଗୋରାଙ୍ଗମାନଙ୍କର ବାସଭବନ ହୋଇଅଛି ।

ସହରମଧ୍ୟସ୍ଥିତ ଜୁମାମସ୍‌ଜିଦ୍ ମୁସଲମାନମାନଙ୍କର ଏକ ଅତୁଳନୀୟ କୀର୍ତ୍ତିବିସ୍ତାରକାରୀ ସର୍ବୋତ୍କୃଷ୍ଟ ଶିଳ୍ପକଳାବିମଣ୍ଡିତ ଉପାସନା ମନ୍ଦିର । ଏହା ଏକ ଉଚ୍ଚଭୂମି ଉପରେ ସାଜାହାନ ବାଦସାହାଙ୍କଦ୍ୱାରା ବହୁ ଅର୍ଥ ବ୍ୟୟରେ ନିର୍ମିତ ହୋଇଥିଲା । ପୂର୍ବେ ବିନାନୁମତିରେ ଏହା ମଧ୍ୟକୁ ହିନ୍ଦୁମାନଙ୍କର ପ୍ରବେଶ ନିଷେଧ ଥିଲା । ବର୍ତ୍ତମାନ ଅବାରଣଦ୍ୱାର ହୋଇଅଛି । ମନ୍ଦିରର ଚତୁର୍ଦ୍ଦିଗ ପ୍ରାଚୀରଦ୍ୱାରା ବେଷ୍ଟିତ । ଉତ୍ତର ଦକ୍ଷିଣ ଓ ପୂର୍ବ ତରଫ ପ୍ରାଚୀର ଗାତ୍ରରେ ସ୍ଥୂରୁକଳା ବିମଣ୍ଡିତ ତିନି ଗୋଟି ତୋରଣ ଦ୍ୱାର ଅଛି । ସିଂହଦ୍ୱାରସଂଲଗ୍ନ ଏକ ପ୍ରକୋଷ୍ଠମଧ୍ୟରେ ବେଦୀ ଅଛି । ସାଜାହାନ ବାଦସାହା ଉପାସନା ଶେଷରେ ଏଠାରେ ଉପବେଶନ କରୁଥିଲେ । ମସ୍‌ଜିଦ୍ ମଧ୍ୟରେ ଦୁଇଗୋଟି ଉଚ୍ଚ ସ୍ତମ୍ଭ ଅଛି । ଉପରକୁ ଉଠିବାନିମନ୍ତେ ସ୍ତମ୍ଭ ମଧ୍ୟରେ ଘୂର୍ଣ୍ଣିତ ପାବଚ୍ଛ ଅଛି । ସ୍ତମ୍ଭଉପରୁ ସହର ଓ ଯମୁନାନଦୀଙ୍କର ଦୃଶ୍ୟ ଅତି ମନୋହର ଦେଖାଯାଏ । ଏଠାରୁ କିଞ୍ଚିତ୍ ଦୂରରେ ଏକ ସୁରମ୍ୟ ଉଦ୍ୟାନ ଅଛି ।

କୁତବମିନାର, ସହରଠାରୁ ୧୧ ମାଇଲ ଦୂରରେ ଅବସ୍ଥିତ । ଏହାର ଉଚ୍ଚତା ୨୩୮ ଫିଟ । ଏହା ଏକ ସୁବୃହତ୍ ପଞ୍ଚତଳବିଶିଷ୍ଟ ସ୍ତମ୍ଭ । ଉପରକୁ ଉଠିବା ସକାଶେ ସ୍ତମ୍ଭ ମଧ୍ୟରେ ୩୮୦ ଗୋଟି ଘୂର୍ଣ୍ଣିତ ପାବଚ୍ଛ ଅଛି । ପ୍ରତ୍ୟେକ ମହଲର ପରସ୍ପର କ୍ରମ ସଙ୍କୁଚିତ ହୋଇ ଉଠିଅଛି । ପ୍ରତ୍ୟେକ ସ୍ତରର ଶୀର୍ଷ ଚତୁର୍ଦ୍ଦିଗରେ ସୁପ୍ରଶସ୍ତ ବାରଣ୍ଡା ଅଛି । ସହରର ଦୃଶ୍ୟ ପ୍ରତ୍ୟେକ ବାରଣ୍ଡାରୁ ଭିନ୍ନ ଭିନ୍ନ ଆକାରରେ ଦେଖାଯାଏ । କୁତବମିନାର [illegible] ମୁସଲମାନ, ଏଥିରେ ମତଭେଦ ଅଛି । ସ୍ତମ୍ଭନାମରୁ [illegible]

ସମୟରେ ୧୦୬୦ରୁ ୧୨୧୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ହୋଇଥିବାର ଜଣାଯାଏ । କେତେକ ଲେଖକଙ୍କ ମତାନୁସାରେ କୌଣସି ହିନ୍ଦୁ ରାଜାଙ୍କ ଦ୍ୱାରା ବହୁବର୍ଷ ପୂର୍ବେ ଏହି ସ୍ତମ୍ଭ ନିର୍ମିତ ହୋଇଥିଲା ।

ସୁବିଖ୍ୟାତ ଲୌହସ୍ତମ୍ଭ କୁତବମିନାରର ଅନତିଦୂରରେ ଅବସ୍ଥିତ । ନବମ ଶତାବ୍ଦୀରେ ଏହା ଏକ ହିନ୍ଦୁ ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । କଳା ଯନ୍ତ୍ର ସାହାଯ୍ୟରେ ଲୌହକୁ ତରଳାଇ ଏରୂପ ପ୍ରକାଣ୍ଡ ସ୍ତମ୍ଭ ନିର୍ମାଣ କରିବା ହିନ୍ଦୁମାନଙ୍କ ପକ୍ଷେ ଗୌରବର ବିଷୟ ଅଟେ । ବର୍ଷାତପ ସହ୍ୟ କରି ଅଦ୍ୟାବଧି ଏହା ଅକ୍ଷୁଣ୍ଣ ଭାବେ ରହିଅଛି । ସ୍ତମ୍ଭର ଉପରିଭାଗରେ କୌଣସି ମୂର୍ତ୍ତି ସ୍ଥାପିତ ହୋଇଥିଲେ । ସମ୍ଭବତଃ ମୁସଲମାନମାନଙ୍କ ଦ୍ୱାରା ତାହା ଅପସାରିତ ହୋଇଥିବ । ସ୍ତମ୍ଭର ଏକ ପାର୍ଶ୍ୱରେ ଦେବନାଗରାକ୍ଷରରେ ନିମ୍ନଲିଖିତ ଭାବଗର୍ଭକ ଲିପି ଖୋଦିତ ହୋଇଅଛି ।

"ରାଜା ଧାବ ନିଜ ଭୁଜ ବଳରେ ସସାଗର ପୃଥିବୀର ଅଧୀଶ୍ୱର ହୋଇ ଏହି କୀର୍ତ୍ତିସ୍ତମ୍ଭ ସ୍ଥାପନ କଲେ । ଏହି ଖୋଦିତ ଲିପି ତାହାଙ୍କର କୀର୍ତ୍ତି ଚିରକାଳ ଘୋଷଣା କରୁ ।"

ସଂସ୍କୃତ ଲିପି କାଳକ୍ରମେ ଧ୍ୱସ୍ତ ପ୍ରାପ୍ତ ହୋଇ ସୁପାଠ୍ୟ ନ ହେବାରୁ ନିକଟବର୍ତ୍ତୀ ପ୍ରକୋଷ୍ଠର ଏକ ଭିତ୍ତିଗାତ୍ରରେ ତହିଁର ପ୍ରତିଲିପି ହସ୍ତାକ୍ଷରରେ ଲେଖା ହୋଇଅଛି । ମହାରାଜା ଅନଙ୍ଗପାଳଙ୍କ ଦ୍ୱାରା ଏହା ନିର୍ମିତ ହୋଇଥିବାର କଥିତ ହୁଏ ।

କୁତବମିନାର ଓ ଲୌହସ୍ତମ୍ଭ ଚତୁଃପାର୍ଶ୍ୱରେ ପୁରାତନ ପ୍ରାସାଦମାନଙ୍କର ଭଗ୍ନସ୍ତୂପ ଦୃଷ୍ଟିଗୋଚର ହୁଏ । ଦୁଇ ସ୍ତମ୍ଭମଧ୍ୟରେ ଶିଳ୍ପକଳା ସମନ୍ୱିତ ଏକ ସୁନ୍ଦର ତୋରଣଦ୍ୱାର ଅଛି । ସମ୍ଭବତଃ ଏହା ଏକ ଦୁର୍ଗର ପ୍ରବେଶଦ୍ୱାର ଥିଲା । ଏଠାରେ ମୁସଲମାନମାନଙ୍କର ଅନେକ

ସମାଧି ମନ୍ଦିର ଅଛି । ତନ୍ମଧ୍ୟରେ ଅଲ୍ଟମସ୍ ଆଦବର୍ଖାଁ ଓ ସମ୍ରାଟ ଆକବରଙ୍କର ପାଳକପିତା ମହମ୍ମଦ କୁଲ୍ଟଖାଁଙ୍କର ସମାଧି ମନ୍ଦିର ମଧ୍ୟ ଉଲ୍ଲେଖ୍ୟ ଅଟେ ।

କୁତବମିନାର ଠାରୁ କିଛିଦୂରରେ ଏକ ଉଚ୍ଚଭୂମି ଉପରେ ଯୋଗମାୟାଙ୍କ ମନ୍ଦିର ପ୍ରତିଷ୍ଠିତ । ହସ୍ତିନାପୁର ରାଜଧାନୀ ଏହିଠାରେ ଥିଲା । ହସ୍ତୀ ନାମକ ରାଜା ପୁର ନିର୍ମାଣ କରିଥିବାରୁ ଏହାର ନାମ ହସ୍ତିନାପୁର ହୋଇଥିଲା । କୁରୁରାଜା ଦୁର୍ଯ୍ୟୋଧନଙ୍କ କନ୍ୟାର ସ୍ୱୟମ୍ବର ସମୟରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ କନ୍ୟାକୁ ବଳପୂର୍ବକ ହରଣ କରି ନେବାରୁ କୌରବ ମହାରଥିମାନେ ଏକତ୍ରିତ ହୋଇ ଅତର୍କିତରେ ଶାମ୍ବଙ୍କୁ ପରାସ୍ତ କରି ବନ୍ଦୀ କଲେ । ନାରଦଙ୍କ ମୁଖରୁ ଯାଦବମାନେ ଏହି ସମ୍ବାଦ ପାଇ ଯୁଦ୍ଧାର୍ଥେ ଆୟୋଜନ କଲେ । ତଦ୍‌ଦର୍ଶନରେ ବଳଦେବ ସମସ୍ତଙ୍କୁ ଯୁଦ୍ଧରୁ କ୍ଷାନ୍ତ ରଖି ସ୍ୱୟଂ ହସ୍ତିନାପୁରକୁ ଯାଇ ସୌହାର୍ଦ୍ଦରେ ଭ୍ରାତୃଷ୍ପୁତ୍ରଙ୍କର ମୁକ୍ତି ପ୍ରାର୍ଥନା କଲେ । କୌରବମାନେ ମୋହବଶତଃ ତହିଁରେ ଭ୍ରୂକ୍ଷେପ ନକରି ବଳଦେବଙ୍କ ପ୍ରତିଅପମାନସୂଚକ ବାକ୍ୟ ପ୍ରୟୋଗ କରିବାରୁ ସେ କ୍ରୋଧାନ୍ୱିତ ହୋଇ ନିଜାୟୁଧ ହଳ ଓ ମୂଷଳଦ୍ୱାରା ହସ୍ତିନାପୁରକୁ ଉତ୍ପାଟନ କରନ୍ତେ କୌରବମାନେ ମହାବିପଦରେ ପଡ଼ି ବରକନ୍ୟା ଉଭୟଙ୍କୁ ପ୍ରଦାନ କରି ଶରଣାପନ୍ନ ହେଲେ । ବଳଦେବ ସେମାନଙ୍କର ସ୍ତୁତିବାକ୍ୟ ଶୁଣି କ୍ରୋଧ ସମ୍ବରଣ କରି ଦୟାପରବଶ ହୋଇ ଅସ୍ତ୍ର ସଂମ୍ବରଣ କଲେ । ଉତ୍ପାଟନର ନିଦର୍ଶନସ୍ୱରୂପ ଅଦ୍ୟାବଧି ଯୋଗମାୟାଙ୍କ ମନ୍ଦିରନିକଟରୁ ଯମୁନାତଟପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ନଦୀଗର୍ଭ ଦିଗକୁ ଅବନତ ହୋଇ ଥିବାର ଦେଖାଯାଏ ।

ସହରଠାରୁ କୁତବମିନାର ପର୍ଯ୍ୟନ୍ତ ବିସ୍ତୃତ ସ୍ଥାନମଧ୍ୟରେ ଜସୁଫିତ୍ତଙ୍କ ମୀନାମନ୍ଦିର, ସଫଦର୍ ଜଙ୍ଗଙ୍କ ସମାଧିମନ୍ଦିର ଓ ଇଂରାଜ ବାହାଦୁରଙ୍କର ନୂତନ ରାଜଧାନୀ ଅବସ୍ଥିତ । ଉକ୍ତ ସ୍ଥାନମଧ୍ୟସ୍ଥରୁ

ଅନ୍ୟ ଏକ ରାସ୍ତା ସହରକୁ ଯାଇଅଛି । ତହିଁର ଏକ ପାର୍ଶ୍ୱରେ ହୁମାୟୁନଙ୍କର ସମାଧି ମନ୍ଦିର ଅଛି ।

ଅଯୋଧ୍ୟାର ନବାବ ସୁଜାଉଦ୍ଦୌଲା ସ୍ୱୀୟ ପିତାଙ୍କ ସମାଧି ସ୍ଥାନରେ ସଫଦରଜଙ୍ଗନାମକ ସମାଧି ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିର ଚତୁଷ୍କୋଣରେ ଚାରିଗୋଟି ଦ୍ୱିତଳ ଗୃହ ଓ ମଧ୍ୟରେ ବୃହଦାକାର ଏକ ଗୁମ୍ବୁଜ ଅଛି । ଛାତ ଉପରୁ ଚତୁର୍ଦ୍ଦିଗର ଦୃଶ୍ୟ ସୁନ୍ଦର ଦେଖାଯାଏ ।

ସମ୍ରାଟ୍ ହୁମାୟୁନଙ୍କର ସମାଧିମନ୍ଦିର ନାନାବିଧ ଶିଳ୍ପକଳାଯୁକ୍ତ ହୋଇ ମନ ହରଣ କରୁଅଛି । ଆକବରଙ୍କ ମାତା ଏହି ମନ୍ଦିର ନିର୍ମାଣ କରାଇ ପତିଭକ୍ତିର ପରାକାଷ୍ଠା ଦେଖାଇଅଛନ୍ତି । ଏକଦିନ ହୁମାୟୁନ ଦୁର୍ଗମଧ୍ୟରେ ଉପବେଶନ କରି ଶାସ୍ତ୍ରାଲୋଚନା କରୁଥିଲେ । ସନ୍ଧ୍ୟାସମୟରେ ନିକଟବର୍ତ୍ତୀ ଉପାସନାମନ୍ଦିରରୁ ଭକ୍ତମାନଙ୍କର କଣ୍ଠଧ୍ୱନି ଶ୍ରବଣ କରି ଅତ୍ୟୁଦ୍‌ଗ୍ରୀବଚିତ୍ତରେ ଦ୍ୱିତଳପ୍ରାସାଦରୁ ଦ୍ରୁତବେଗରେ ଅବତରଣ କରିବା ସମୟରେ ହଠାତ୍ ପଦସ୍ଖଳିତ ହେବାରୁ ପାବଚ୍ଛ ଉପରୁ ପଡ଼ି ଗଡ଼ିଆସି ପ୍ରାଣତ୍ୟାଗ କଲେ । ତାହାଙ୍କର ପତନ ସ୍ଥାନରେ ସମାଧି ମନ୍ଦିର ନିର୍ମାଣ ହୋଇଅଛି । ଏହା ନିକଟରେ ତାଙ୍କର ପ୍ରିୟ ପତ୍ନୀଙ୍କର ସମାଧି ମନ୍ଦିର ସ୍ଥାପିତ ହୋଇଅଛି । ଚତୁର୍ଦ୍ଦିଗରେ ଦୁର୍ଗର ଭଗ୍ନାବଶେଷ ସ୍ତୂପାକାରରେ ପଡ଼ିଅଛି । ଏଠାରୁ କିଛି ଦୂରରେ ଫକୀର-ନିଜାମୁଦ୍ଦିନ, କବି ଖସ୍ରୁ ଓ ଅନ୍ୟାନ୍ୟ କେତେକ ପ୍ରସିଦ୍ଧ ମୁସଲମାନମାନଙ୍କର ସମାଧିମନ୍ଦିର ଦୃଷ୍ଟିଗୋଚର ହୁଏ । ସେମାନଙ୍କମଧ୍ୟରୁ ସାଜାହାନଙ୍କର ଜ୍ୟେଷ୍ଠାକନ୍ୟା ଯାହାନାରାଙ୍କର ସମାଧିମନ୍ଦିର ଅପେକ୍ଷାକୃତ କ୍ଷୁଦ୍ର ହେଲେ ମଧ୍ୟ ନିମ୍ନୋକ୍ତ ଘଟଣାରୁ ଅତି ପବିତ୍ର ଅଟେ ।

ସାଜାହାନ ତାହାଙ୍କ ପୁତ୍ର ଆରଙ୍ଗଜେବଙ୍କ ଦ୍ୱାରା କାରାରୁଦ୍ଧ ହେବାସମୟରେ ପିତୃଭକ୍ତିପରାୟଣା କନ୍ୟା ଯାହାନାରା ସାଂସାରିକ ସୁଖରେ

ଜଳାଞ୍ଜଳି ଦେଇ, କାରାଗୃହର କଷ୍ଟ ପ୍ରତି ଭ୍ରୂକ୍ଷେପ ନ କରି, ଅମ୍ଳାନ-ବଦନରେ ସମସ୍ତ କଷ୍ଟ ସହ୍ୟ କରି ପିତାଙ୍କ ମୃତ୍ୟୁପର୍ଯ୍ୟନ୍ତ ତାହାଙ୍କ ସେବା ଶୁଶ୍ରୂଷାରେ ନିଯୁକ୍ତ ଥିଲେ । ପିତାଙ୍କ ମୃତ୍ୟୁପରେ ଯାବଜ୍ଜୀବନ ଦରିଦ୍ର ଓ ଅତିଥି ସେବାରେ କାଳାତିପାତ କରିଥିଲେ ।

ହୁମାୟୁନଙ୍କ ସମାଧିମନ୍ଦିରଠାରୁ ଯମୁନାକୁ ଯିବା ରାସ୍ତାରେ ଚତୁଃଷଷ୍ଟି ସ୍ତମ୍ଭୋପରି ସ୍ଥାପିତ ଶ୍ୱେତପ୍ରସ୍ତରନିର୍ମିତ ଏକ ମନୋହର ପ୍ରାସାଦ ଦୃଷ୍ଟି-ଗୋଚର ହୁଏ । ଏହି ଅଞ୍ଚଳରେ ଇନ୍ଦ୍ରପ୍ରସ୍ଥ ରାଜଧାନୀ ଥିଲା । ବର୍ତ୍ତମାନ ତହିଁର ଭଗ୍ନାଂଶ ଇତସ୍ତତଃ ପଡ଼ିଥିବାର ଦେଖାଯାଏ ।

ସହରଠାରୁ ୭ ମାଇଲ ଦୂରରେ ତୋଗଲକାବାଦ ନାମଧେୟ ଦୁର୍ଗ ଅଛି । ଏହାର ଚାରିପାଖ ପରିଖାଦ୍ୱାରା ବେଷ୍ଟିତ । ଅପରପାର୍ଶ୍ୱରେ ଏକ ପର୍ବତ ଅଛି । ପ୍ରାସାଦସମୂହ ପତନୋନ୍ମୁଖ ହୋଇ ରହିଅଛି । ପ୍ରବେଶଦ୍ୱାରର ତୋରଣ ଶିଳ୍ପକଳାଳଙ୍କୃତ ହୋଇ ଶୋଭାପାଉଅଛି ।

ମହମ୍ମଦତୋଗଲକ ତାହାଙ୍କ ପିତା ତୋଗଲକସାହାଙ୍କର ସମାଧି ମନ୍ଦିର ନିର୍ମାଣ କରିଥିଲେ । ଏହା ନିକଟରେ ତୋଗଲକସାହାଙ୍କ ପତ୍ନୀ ଓ ପୁତ୍ରଦ୍ୱୟଙ୍କର ସମାଧିମନ୍ଦିର ଅଛି ।

ଅକ୍ଟୋବର ମାସ ୮ ତାରିଖ ପୂର୍ବାହ୍ଣ ୧୧ ଘଣ୍ଟା ସମୟରେ ଆମ୍ଭେମାନେ ଦିଲ୍ଲୀରୁ ମଥୁରା ଯାତ୍ରା କଲୁଁ । ମଥୁରା ଦିଲ୍ଲୀଠାରୁ ୮୯ ମାଇଲ ଦୂରରେ ଅବସ୍ଥିତ । ପ୍ରତ୍ୟେକର ତୃତୀୟ ଶ୍ରେଣୀ ରେଲ ଭଡ଼ା ଟ ୧।୵ ଣା ହିସାବରେ ପଡ଼ିଲା । ଶ୍ରୀ ମଧୁସୂଦନ ପଟ୍ଟନାୟକଙ୍କ ପରାମର୍ଶାନୁସାରେ ରାତ୍ରରେ ମଥୁରାର ଏକ ପଣ୍ଡାଙ୍କ ଗୃହରେ ରହି ପରଦିବସ ତାହାଙ୍କ ଦୌରାତ୍ମ୍ୟରେ କେତେକ ଅସୁବିଧା ଓ କଷ୍ଟ ଭୋଗ କରିଥିଲୁଁ ।

---

# ମଥୁରା ।

ମଥ୍ୟତେ ତୁ ଜଗତ୍ ସର୍ବ୍ବଂ ବ୍ରହ୍ମଜ୍ଞାନେନ ଯେନ ବା ।
ତତ୍ସାରଭୂତଂ ଯଦ୍ ଯସ୍ୟାଂ ମଥୁରା ସା ନିଗଦ୍ୟତେ ।
ଗୋପାଳ ତାପନୀ ।

ଅନନ୍ତ ପୁଣ୍ୟତୀର୍ଥେଷୁ ମୁକ୍ତିରେବ ମହାଫଳା ।
ମୁକ୍ତେଃ ପ୍ରାର୍ଥ୍ୟା ହରେର୍ଭକ୍ତି ମଥୁରାୟାନ୍ତୁ ଲଭ୍ୟତେ ।
ବୈକୁଣ୍ଠାଜ୍ଜନିତୋ ବରା ମଧୁପୁରୀ ତତ୍ରାପି ରାସୋତ୍ସବାତ୍
ବୃନ୍ଦାରଣ୍ୟମୁଦାରପାଣିରମଣାତ୍ ତତ୍ରାପି ଗୋବର୍ଦ୍ଧନଃ ।
ରାଧାକୁଣ୍ଡମିହାପି ଗୋକୁଳପତେଃ ପ୍ରେମାମୃତପ୍ଲାବନାତ୍
କୁର୍ଯ୍ୟାଦସ୍ୟ ବିରାଜତୋ ଗିରିତଟେ ସେବାଂ ବିବେକୀ ନ କଃ ।
ଶ୍ରୀରୂପଗୋସ୍ୱାମୀଙ୍କ ଉପଦେଶାମୃତ ।

ମାଘେ ମାସେ ପ୍ରୟାଗେ ତୁ ଯତ୍ଫଳଂ ଲଭତେ ନରଃ ।
ତତ୍ଫଳଂ ଲଭତେ ଦେବି ! ମଥୁରାୟାଂ ଦିନେ ଦିନେ ।୧୩।
ସନ୍ନିହତ୍ୟାଂ ତୁ ଯତ୍ପୁଣ୍ୟଂ ରାହୁଗ୍ରସ୍ତେ ଦିବାକରେ ।
ତତ୍ଫଳଂ ଲଭତେ ଦେବି ! ମଥୁରାୟାଂ ଜିତେନ୍ଦ୍ରିୟଃ ।୧୪।
କାର୍ତ୍ତିକ୍ୟାଂ ଚୈବ ଯତ୍ପୁଣ୍ୟଂ ପୁଷ୍କରେ ତୁ ବସୁନ୍ଧରେ ।
ତତ୍ଫଳଂ ଲଭତେ ଦେବି ! ମଥୁରାୟାଂ ଦିନେ ଦିନେ ।୧୫।
ପୂର୍ଣ୍ଣେ ବର୍ଷେ ସହସ୍ରେ ତୁ ବାରାଣସ୍ୟାଂ ତୁ ଯତ୍ଫଳଂ ।
ତତ୍ଫଳଂ ଲଭତେ ଦେବି ! ମଥୁରାୟାଂ କ୍ଷଣେନ ହି ।୧୬।
ଆଦିବରାହପୁରାଣ, ମଥୁରାମାହାତ୍ମ୍ୟ ପ୍ରଥମୋଽଧ୍ୟାୟ ।

ବ୍ରହ୍ମଜ୍ଞାନଦ୍ୱାରା ସମଗ୍ର ବ୍ରହ୍ମାଣ୍ଡ ମନ୍ଥନ କଲେ ଯେଉଁ ସାର ସଂଗୃହୀତ ହେବ ତାହାର ସମଷ୍ଟି ମଥୁରା । ଶ୍ରୀକୃଷ୍ଣଙ୍କର ଜନ୍ମହେବାରୁ ମଥୁରା ବୈକୁଣ୍ଠଠାରୁ ଉତ୍କୃଷ୍ଟ । ରାସୋତ୍ସବଯୋଗୁଁ ବୃନ୍ଦାବନ ମଥୁରାଠାରୁ ଉତ୍କୃଷ୍ଟ ।

# ମଥୁରା ।

ଶ୍ରୀକୃଷ୍ଣଙ୍କର କ୍ରୀଡ଼ାଭୂମି ଥିବାରୁ ଗୋବର୍ଦ୍ଧନ ପର୍ବତ ବୃନ୍ଦାବନଠାରୁ ଉତ୍କୃଷ୍ଟ, ପ୍ରେମାମୃତପୂର୍ଣ୍ଣ ହୋଇଥିବାରୁ ରାଧାକୁଣ୍ଡ ଗୋବର୍ଦ୍ଧନଙ୍କ ଠାରୁ ଉତ୍କୃଷ୍ଟ ଅଟନ୍ତି । ଅତଏବ ଭକ୍ତବୃନ୍ଦ ରାଧାକୁଣ୍ଡତଟରେ ବାସକରି କୃତାର୍ଥ ହୁଅନ୍ତି ।

ମାଘମାସରେ ପ୍ରୟାଗସ୍ନାନ, ସୂର୍ଯ୍ୟୋପରାଗରେ କୁରୁକ୍ଷେତ୍ରରେ ସ୍ନାନ, କାର୍ତ୍ତିକ ମାସରେ ପୁଷ୍କରତୀର୍ଥରେ ସ୍ନାନ ଓ ସହସ୍ର ବର୍ଷ କାଶୀ ବାସଦ୍ୱାରା ଯେଉଁ ଫଳ ଲାଭ ହୁଏ କ୍ଷଣକାଳ ମଥୁରାରେ ବାସ କଲେ ସେହି ଫଳ ଲାଭ ହେବ ।

ମଥୁରା ମଣ୍ଡଳ ବିଂଶତି ଯୋଜନ ବିସ୍ତୃତ ପଦ୍ମାକାର ପୁଣ୍ୟ ଭୂମି ଓ ଅଖିଳ ପ୍ରାଣିଙ୍କର ମୁକ୍ତିଦାୟକ ଅଟେ । ପଦ୍ମର କର୍ଣ୍ଣିକାରେ ଦୁଃଖହନ୍ତା କେଶବ ପ୍ରତିଷ୍ଠିତ । କର୍ଣ୍ଣିକାରେ ମୃତ୍ୟୁ ହେଲେ ମୋକ୍ଷଲାଭ ହୁଏ । ପତ୍ର-ମଧ୍ୟରେ ମୃତ୍ୟୁ ହେଲେ ଉତ୍ତମଫଳ ପ୍ରାପ୍ତି ହୁଏ । ପଦ୍ମର ପଶ୍ଚିମଭାଗରେ ଗୋବର୍ଦ୍ଧନଙ୍କ ପାଦଦେଶରେ ହରିଦେବ, ଉତ୍ତର ଭାଗରେ ଶ୍ରୀଗୋବିନ୍ଦ-ଦେବ, ପୂର୍ବଭାଗରେ ବିଶ୍ରାମଘାଟରେ ବିଶ୍ରାନ୍ତିଦେବ ଓ ଦକ୍ଷିଣଭାଗରେ କପିଳ ବରାହଦେବ ବିରାଜମାନ କରିଅଛନ୍ତି । କପିଳ ନାମକ ମହର୍ଷି ବରାହ ପ୍ରତିମାଙ୍କୁ ମନରୁ ଜାତ କରିଥିଲେ । ଇନ୍ଦ୍ର ତାହାଙ୍କଠାରୁ ଉକ୍ତ ପ୍ରତିମା ପ୍ରାପ୍ତ ହେଲେ । ରାବଣ ଇନ୍ଦ୍ରଙ୍କୁ ଜୟକରି ପ୍ରତିମାଙ୍କୁ ନେଇ ଲଙ୍କା ପୁରୀରେ ସ୍ଥାପନ କଲେ । ଶ୍ରୀରାମଚନ୍ଦ୍ର ରାବଣକୁ ବଧ କରି ପ୍ରତିମାଙ୍କୁ ଆଣି ନିଜ ରାଜଧାନୀ ଅଯୋଧ୍ୟାରେ ରଖିଲେ । ଶ୍ରୀରାମଚନ୍ଦ୍ରଙ୍କ ଭ୍ରାତା ଶତ୍ରୁଘ୍ନ ମଥୁରାନଗରୀର ତତ୍କାଳୀନ ରାଜା ଲବଣ ରାକ୍ଷସକୁ ବଧ କରି ରାଜଧାନୀରେ ବହୁ ବ୍ରାହ୍ମଣମାନଙ୍କୁ ନିବାସ ଦେଇ ପ୍ରତିମାଙ୍କୁ ସେଠାରେ ପ୍ରତିଷ୍ଠିତ କଲେ ।

ଆଦିବରାହ ପୁରାଣ, ମଥୁରାମାହାତ୍ମ୍ୟ ୧୬ ଅଧ୍ୟାୟ ।

ମଥୁରାନଗର ତ୍ରେତା ଦ୍ୱାପର ଓ କଳି ତିନ ଯୁଗ ବ୍ୟାପି-ରହିଅଛି । ତ୍ରେତାଯୁଗରେ ମଥୁରାମଧୁନାମକ ଦୈତ୍ୟର ରାଜଧାନୀ ଥିଲା । ତାହାଙ୍କ ପୁତ୍ର ଲବଣଙ୍କ ଦୌରାତ୍ମ୍ୟରେ ମହର୍ଷିଗଣ ପ୍ରପୀଡ଼ିତ ହୋଇ ଶ୍ରୀରାମଚନ୍ଦ୍ରଙ୍କର ଶରଣାପନ୍ନ ହେବାରୁ ତାହାଙ୍କର ଆନୁକୂଲ୍ୟରେ ଶତ୍ରୁଘ୍ନ ମଥୁରା ଯାତ୍ରା କରି ଏକାକୀ ଲବଣଙ୍କୁ ବଧକଲେ । ଶତ୍ରୁଘ୍ନ ପୁତ୍ରପୌତ୍ରାଦି କ୍ରମେ ମଥୁରାଞ୍ଚଳର ରାଜା ହେଲେ । ଦ୍ୱାପରଯୁଗରେ ଯଦୁପତି ଶୂରସେନ ମଥୁରାମଣ୍ଡଳର ଅଧୀଶ୍ୱର ହେଲେ । ତାହାଙ୍କର ବଂଶଧର ଉଗ୍ରସେନ କେତେକ ସମୟ ମଥୁରାରେ ରାଜା ହେବା ପର ପୁତ୍ର କଂସ ପିତାଙ୍କୁ ନିଗ୍ରହ କରି ସ୍ୱୟଂ ଶାସନଭାର ଗ୍ରହଣ କଲେ । ଭକ୍ତ ବୃନ୍ଦଙ୍କୁ କଂସର ଦୌରାତ୍ମ୍ୟରୁ ରକ୍ଷା କରିବା ସକାଶେ ଶ୍ରୀକୃଷ୍ଣଙ୍କର ଆବିର୍ଭାବ ହୁଏ । ପିତା ବସୁଦେବ ସଦ୍ୟୋଜାତ ଶିଶୁ ଶ୍ରୀକୃଷ୍ଣଙ୍କୁ କଂସ-ହସ୍ତରୁ ରକ୍ଷା କରିବା ମାନସରେ ଅଲକ୍ଷିତ ଭାବେ ତାହାଙ୍କୁ ନେଇ ଗୋକୁଳପତି ନନ୍ଦଙ୍କ ଭବନରେ ରଖି ନନ୍ଦଙ୍କର ନବପ୍ରସୂତା କନ୍ୟାଙ୍କୁ ଆଣି ଦେବକୀଙ୍କ କୋଳରେ ଦେଲେ । କଂସ ଦେବକୀଗର୍ଭରୁ କନ୍ୟାଜାତ ହେବାର ଶୁଣି ଦ୍ରୁତପଦରେ ଆସି ଶିଶୁକୁ ବଧ କରିଥିଲେ । ଶ୍ରୀକୃଷ୍ଣ ଏକାଦଶ ବର୍ଷ ପର୍ଯ୍ୟନ୍ତ ଗୋକୁଳ ଓ ବୃନ୍ଦାବନରେ ବାସକରି ପୂତନାଦି ରାକ୍ଷସମାନଙ୍କ ବିନାଶ, ଗୋବର୍ଦ୍ଧନୋଦ୍ଧରଣ ଓ ରାସଲୀଳାଦି ସମାପନାନନ୍ତର ମଥୁରାକୁ ଆଗତ ହୋଇ କଂସବଧ, ଉଗ୍ରସେନଙ୍କ ରାଜ୍ୟାଭିଷେକ, ପିତାମାତାଙ୍କ କାରାମୁକ୍ତି, ଦେଶାନ୍ତରଗତ ବନ୍ଧୁବର୍ଗଙ୍କ ପୁନରାନୟନାଦି କାର୍ଯ୍ୟ ସମାଧା କରିଥିଲେ । କଂସର ଶ୍ୱଶୁର ଜରାସନ୍ଧ ଓ କାଳଯବନ ପ୍ରଭୃତି ରାକ୍ଷସମାନଙ୍କ ଆକ୍ରମଣରୁ ଯାଦବମାନଙ୍କୁ ରକ୍ଷା କରିବା ସକାଶେ ଶ୍ରୀକୃଷ୍ଣ ମଥୁରା ତ୍ୟାଗକରି ସମୁଦ୍ରମଧ୍ୟରେ ଦ୍ୱାରକାପୁରୀ ସ୍ଥାପନକଲେ ।

ବୁଦ୍ଧଦେବଙ୍କର ବହୁବାର ମଥୁରା ଯାତ୍ରା ବୌଦ୍ଧଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ହୋଇଅଛି । ଖ୍ରୀଷ୍ଟଜନ୍ମଙ୍କ ୪। ୭ବର୍ଷ ପୂର୍ବେ ବୁଦ୍ଧଦେବର

ଦେହତ୍ୟାଗ କରିଥିଲେ । ଗଣନାନୁସାରେ ମଥୁରା ୨୫୦୦ ବର୍ଷ ପୂର୍ବେ ଏକ ବିଖ୍ୟାତ ନଗର ଥିଲା । ବୌଦ୍ଧରାଜାମାନେ ମଥୁରାଧିକାର କରି ସେଠାରେ ଅନେକ ବୌଦ୍ଧ ମଠ ସ୍ଥାପନ କରିଥିଲେ । ବୌଦ୍ଧଧର୍ମର ଅବନତି ଓ ହିନ୍ଦୁମାନଙ୍କର ଉନ୍ନତି ସଙ୍ଗେ ମଥୁରା ରାଜପୁତ ରାଜାମାନଙ୍କର କରଗତ ହେଲା ।

୧୦୧୭ ଖ୍ରୀଷ୍ଟାବ୍ଦରେ ଗଜନିର ସୁଲତାନ୍ ମାମୁଦ ମଥୁରା ନଗର ଲୁଣ୍ଠନକରି ପ୍ରଚୁର ଧନ ରତ୍ନ ଓ ମନ୍ଦିରମାନଙ୍କମଧ୍ୟରୁ ସୁବର୍ଣ୍ଣ ଓ ରଜତ ନିର୍ମିତ ଶ୍ରୀବିଗ୍ରହ ସମସ୍ତ ଓ ମହାର୍ଘ ବସ୍ତ୍ରାଳଙ୍କାରାଦି ଅପହରଣ କରି ନେଇଥିଲେ, କିନ୍ତୁ ସେ ସ୍ଥାପତ୍ୟକଳା ବିମଣ୍ଡିତ ମନ୍ଦିରମାନଙ୍କ ଦୃଶ୍ୟରେ ବିମୁଗ୍ଧ ହୋଇ ତହିଁରେ ହସ୍ତକ୍ଷେପ କରି ନ ଥିଲେ ।

୧୫୦୦ ଖ୍ରୀଷ୍ଟାବ୍ଦରେ ସିକନ୍ଦରଲୋଦି ମଥୁରା ନଗର ଆକ୍ରମଣ କରି ଦେବମନ୍ଦିରସମୂହ ଧ୍ୱଂସ କଲେ । ନାନାବିଧ ଦୌରାତ୍ମ୍ୟ ସହ୍ୟ କରି ମଥୁରା ବହୁବର୍ଷ ପର୍ଯ୍ୟନ୍ତ ଜନଶୂନ୍ୟ ଓ ବନାକୀର୍ଣ୍ଣ ହୋଇ ରହିଲା । ଆକବର ବାଦସାହାଙ୍କ ରାଜତ୍ୱ ସମୟରେ ହିନ୍ଦୁମାନେ କିରପଦରେ ବହୁ ମନ୍ଦିର ଓ ଶ୍ରୀବିଗ୍ରହମାନ ପୁନଃ ପ୍ରତିଷ୍ଠା କରିଥିଲେ । ମୋଗଲ୍ ସମାଜ୍ୟ ପତନକାଳେ ମରହଟ୍ଟାମାନେ ମଥୁରା ରାଜସିଂହାସନ ଆରୋହଣ କଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଏହା ଇଂରେଜମାନଙ୍କର ଶାସନାଧୀନରେ ଆସିବାରୁ ତଦବଧି ଏ ନଗରର ଶ୍ରୀ ଉତ୍ତରୋତ୍ତର ବୃଦ୍ଧି ହେଉଅଛି । ଏକସମୟରେ ଭୟାନକ ଭୂମିକମ୍ପ ହୋଇଅନେକ ପୁରାତନ କୀର୍ତ୍ତି ଧ୍ୱଂସ କରିଥିଲା ।

ମଥୁରା, ଗୋକୁଳ, ଗୋବର୍ଦ୍ଧନ ଓ ବୃନ୍ଦାବନ ପ୍ରଦେଶ ସମସ୍ତ ଏକତ୍ରେ ବ୍ରଜଧାମ ନାମେ ଅଭିହିତ । ଚୌରାଶି କୋଶ ବ୍ରଜଧାମ ଭ୍ରମଣକୁ ବନ ପରିକ୍ରମା କହନ୍ତି । ପ୍ରତ୍ୟେକ ବର୍ଷ ଭାଦ୍ର କୃଷ୍ଣ ଦଶମୀ-

ଠାରୁ ମଥୁରା ନଗରରେ ପ୍ରତିଷ୍ଠିତ ଶ୍ରୀଭୂତେଶ୍ୱର ମହାଦେବଙ୍କ ମନ୍ଦିର ନିକଟରୁ ପରିକ୍ରମା ଆରମ୍ଭ ହୋଇ ଶୁକ୍ଳ ଦଶମୀରେ ସେହି-ଠାରେ ଶେଷ ହୁଏ ।

ବ୍ରଜଧାମର ପରିକ୍ରମା ବ୍ୟତୀତ ମଥୁରା ଓ ବୃନ୍ଦାବନର ପଞ୍ଚକୋଶୀ ପରିକ୍ରମା ହୁଏ । ମଥୁରା ପରିକ୍ରମା ଶ୍ରୀରଙ୍ଗେଶ୍ୱର ମହାଦେବଙ୍କ ଠାରୁ ଆରମ୍ଭହୁଏ । ଶ୍ରୀ ବୃନ୍ଦାବନ ପରିକ୍ରମା କାର୍ତ୍ତିକପୂର୍ଣ୍ଣିମା ଦିନ ହୁଏ । ବର୍ତ୍ତମାନ କେତେକ ତୀର୍ଥସ୍ଥାନ ଯମୁନା ଗର୍ଭରେ ଲୀନ ହୋଇ ଥିବାରୁ ଚଉରାଶିକୋଶ ଓ ପଞ୍ଚକୋଶ ପରିକ୍ରମାର ପରିମାଣ ହ୍ରାସ ହୋଇଅଛି ।

ମଥୁରାନଗର ଯମୁନାକୂଳରେ ଅର୍ଦ୍ଧଚନ୍ଦ୍ରାକାରରେ ଅବସ୍ଥିତ । ନଗରରେ ଅନେକ ଘାଟ ଅଛି । ସେମାନଙ୍କ ମଧ୍ୟରେ ବିଶ୍ରାମ-ଘାଟ, ଧ୍ରୁବଘାଟ ଓ ଶ୍ୟାମଘାଟ ପ୍ରଧାନ

---

## ବିଶ୍ରାମ ଘାଟ ।

ପ୍ରତ୍ୟହ ସନ୍ଧ୍ୟା ସମୟରେ ବିଶ୍ରାମଘାଟରେ ଯମୁନାଦେବୀଙ୍କର ଆରତି ହୁଏ । ଦର୍ଶନବ୍ୟତୀତ ବର୍ଣ୍ଣନାଦ୍ୱାରା ଏହି ରମଣୀୟ ଦୃଶ୍ୟର ମାଧୁର୍ଯ୍ୟ ଅନୁଭବ କରିବା କଠିନ । ଆରତିସମୟରେ ଦର୍ଶକବୃନ୍ଦ ସମବେତ ହୋଇ ପୁଲକିତ ଗାତ୍ର ଓ ଉତ୍ଫୁଲ୍ଲ ନୟନରେ ସତୃଷ୍ଣଭାବେ ଆରତି ଦର୍ଶନ କରନ୍ତି । ଭକ୍ତକଣ୍ଠ-ନିଃସୃତ ଯମୁନାଦେବୀଙ୍କର ସ୍ତୁତିପାଠ ଧ୍ୱନି, ଘଣ୍ଟା ଓ ଶଙ୍ଖ ଧ୍ୱନି ଏକତ୍ରିତ ହୋଇ ଗଗନ ମଣ୍ଡଳ ପୂର୍ଣ୍ଣକରେ । ମନରୁ ବିଷୟଜନିତ ଚିନ୍ତା ଦୂରୀଭୂତ ହୋଇ ଦର୍ଶକର ହୃଦୟ ମଧୁର ଭକ୍ତିରସରେ ପ୍ଲାବିତ ହୁଏ । ପୂଜକ ପୁଷ୍ପମାଳାବିଭୂଷିତ ହୋଇ ହସ୍ତରେ ପଞ୍ଚପ୍ରଦୀପାଧାର ଧାରଣ କରି ଏକ ଉଚ୍ଚବେଦୀ ଉପରେ ଦଣ୍ଡାୟମାନ ହୋଇ ଆରତି କରନ୍ତି ।

## ବିଶ୍ରାମଘାଟ ।

ଭଗବାନ ଶ୍ରୀକୃଷ୍ଣ କଂସକୁ ବଧକରି ଏଠାରେ ବିଶ୍ରାମ କରିଥିବାରୁ ଘାଟରନାମ ବିଶ୍ରାମଘାଟ ହୋଇଅଛି । ଘାଟ ଉପରସ୍ଥ ମନ୍ଦିରମାନଙ୍କ ମଧ୍ୟରେ ଶ୍ରୀବିଗ୍ରହ ବିରାଜମାନ କରିଅଛନ୍ତି । ସୁଦୃଢ଼ ପ୍ରସ୍ତରନିର୍ମିତ ସୋପାନାବଳି ନଦୀଗର୍ଭକୁ ପ୍ରବେଶ କରିଅଛି । ଏଠାରେ ଯାତ୍ରିମାନେ ସ୍ନାନ, ଦାନ, ତର୍ପଣ ଓ ଶ୍ରାଦ୍ଧାଦି କରନ୍ତି । ଯାତ୍ରିମାନଙ୍କ ନିକ୍ଷିପ୍ତ ଫଳ, ତଣ୍ଡୁଳ ଓ ନିବେଦ୍ୟାଦି ଏବଂ ଲୋକଙ୍କପ୍ରଦତ୍ତ ଖାଦ୍ୟଦ୍ରବ୍ୟସମୂହକୁ ବୃହଦାକାର କୂର୍ମମାନେ ଏକତ୍ରିତ ହୋଇ ପ୍ରତିଯୋଗିତା ସହିତ ଭକ୍ଷଣ କରନ୍ତି । ବାନରମାନେ କୂର୍ମଙ୍କ ପୃଷ୍ଠରେ ଉପବିଷ୍ଟ ହୋଇ ଏକପୃଷ୍ଠରୁ ଅନ୍ୟ ପୃଷ୍ଠକୁ ବିଚରଣ କରି କୂର୍ମମାନଙ୍କଠାରୁ ବଳପୂର୍ବକ ଖାଦ୍ୟ ଗ୍ରହଣ କରି ଭକ୍ଷଣ କରୁଥିବାର ଦୃଶ୍ୟ କୌତୁକଜନକ ଅଟେ । ସ୍ନାନ ସମୟରେ ଲୋକମାନେ କୂର୍ମଙ୍କ ଦ୍ୱାରା ପ୍ରପୀଡ଼ିତ ହୁଅନ୍ତି, କିନ୍ତୁ ସେମାନେ କାହାର କିଛି କ୍ଷତ କରନ୍ତିନାହିଁ ।

ଘାଟର ଉପରିଭାଗରେ ପ୍ରସ୍ତରନିର୍ମିତ ଏକ ବୃହତ୍ ତୋରଣ ଅଛି । ତାହା ଗାତ୍ରରେ ନାନାବିଧ ପୁଷ୍ପଲତା ଖୋଦିତ ହୋଇଅଛି । ଉଭୟ ପାର୍ଶ୍ୱସ୍ଥିତ ଚତୁଷ୍କାର ବୃହତ୍ ଛିଦ୍ର ମଧ୍ୟରେ ଦୁଇଗୋଟି ସେହିପରି ମୂର୍ତ୍ତି ପ୍ରତିକୃତ ସ୍ଥାପିତ ହୋଇଅଛି । ତୋରଣ ମଧ୍ୟଦେଶରେ ପିତ୍ତଳନିର୍ମିତ ଏକ ବୃହତ୍ ଘଣ୍ଟା ଝୁଲୁଅଛି । ସମ୍ମୁଖରେ ଏକ ଉଚ୍ଚବେଦୀ ଅଛି । ତାହା ଉପରେ ଦଣ୍ଡାୟମାନ ହୋଇ ପୂଜକ ଯମୁନାଦେବୀଙ୍କର ଆରତି କରନ୍ତି ।

ଧ୍ରୁବଘାଟ-ଯମୁନା ତୀରବର୍ତ୍ତୀ ଉଚ୍ଚ ଭୂମିଉପରିସ୍ଥ ଏକ କ୍ଷୁଦ୍ରମନ୍ଦିରରେ କୃଷ୍ଣପ୍ରସ୍ତରନିର୍ମିତ ଧ୍ରୁବଙ୍କର ଶ୍ରୀବିଗ୍ରହ ପ୍ରତିଷ୍ଠିତ ହୋଇଅଛି । ଉତ୍ତାନପାଦ ରାଜାଙ୍କର ପଞ୍ଚମବର୍ଷୀୟ କନିଷ୍ଠ ପୁତ୍ର ଧ୍ରୁବ ବିମାତାଙ୍କ କୁବାକ୍ୟରେ ମର୍ମାହତ ହୋଇ ସିଂହାସନପ୍ରାପ୍ତି ବାସନାରେ ଏଠାରେ କଠୋର ତପସ୍ୟା କରିଥିଲେ । ପୂର୍ଣ୍ଣିଗର୍ଭରତାର ଭଗବାନ ତାହାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ଇପ୍ସିତବର ଓ ଧ୍ରୁବପଦ ଦାନ କରିଥିଲେ । ଧ୍ରୁବ ଜ୍ୟୋତିଷ୍ଚକ୍ରରେ ତା

ଉତ୍ତମଙ୍କ ଅକାଳମୃତ୍ୟୁଯୋଗରେ ମର୍ମାହତ ହୋଇ ଭ୍ରାତୃହନ୍ତାମାନଙ୍କୁ ନାଶକରି ରାଜ୍ୟଶାସନଭାର ଗ୍ରହଣ ଓ ଦକ୍ଷତା ସହିତ ରାଜକାର୍ଯ୍ୟ ନିର୍ବାହ କରି ଥିଲେ । ଧ୍ରୁବ ସୁଯଶ ପୃଥିବୀରେ ବିସ୍ତାର କରି ଦେହାନ୍ତେ ଧ୍ରୁବଲୋକ ପ୍ରାପ୍ତହେଲେ । ତାହାଙ୍କ ନାମାନୁସାରେ ଘାଟର ନାମ ଧ୍ରୁବଘାଟ ହୋଇଅଛି ।

ଅବତାରେ ମହାବିଷ୍ଣୋର୍ବାସୁଦେବ ଉତ୍ତରତଃ ।
ଯୋ ଧ୍ରୁବାପ୍ତ ନିଜଂ ପ୍ରାଦାତ୍ ସ୍ଥାନମନ୍ୟାନଧିଷ୍ଠିତଂ । ପ୍ରକାଶସଂହିତା ।

ସପ୍ତର୍ଷିଟୀଳା—ଧ୍ରୁବଘାଟ ନିକଟରେ ମରୀଚଆଦି ସପ୍ତର୍ଷିମାନଙ୍କର ମୂର୍ତ୍ତିଅଛି । ଏଠାରେ ସେମାନେ ତପସ୍ୟା କରିଥିଲେ ।

ଆଦିକେଶବ—ମଥୁରାରେ ଆଦିକେଶବଙ୍କ ମନ୍ଦିର ସର୍ବପ୍ରଧାନ ଅଟେ । ଏହା ସହରର ବାହାରେ ଏକ ନିର୍ଜନ ସ୍ଥାନରେ ଅବସ୍ଥିତ । ନିକଟରେ କେତେକ ପଲ୍ଲୀଗୃହ ଅଛି । ପୁରାତନ ମନ୍ଦିର ସିକନ୍ଦରଲୋଦିଙ୍କ ଦ୍ୱାରା ଭଗ୍ନ ହୋଇଥିଲା । ବୁନ୍ଦେଲଖଣ୍ଡର ରାଜା ବୀରସିଂହ ବହୁ ଅର୍ଥବ୍ୟୟରେ ଏକ ନୂତନ ସୁନ୍ଦର ମନ୍ଦିର ନିର୍ମାଣ କରାଇଥିଲେ । ଉକ୍ତ ମନ୍ଦିର ସମ୍ରାଟ ଆରଙ୍ଗଜେବଙ୍କ ଆଦେଶ କ୍ରମେ ଭଗ୍ନହୋଇ ତଦୁପକରଣରେ ତତ୍ସନ୍ନିକଟରେ ଏକ ମସ୍‌ଜିଦ୍ ନିର୍ମିତ ହେଲା । ପଣ୍ଡାମାନେ ଆଦି-କେଶବଙ୍କ ଶ୍ରୀବିଗ୍ରହକୁ ସ୍ଥାନାନ୍ତରିତ କରି ରକ୍ଷା କରିଥିଲେ । ମୋଗଲ ସାମ୍ରାଜ୍ୟ ପତନକ୍ରମେ ପୁରାତନ ମନ୍ଦିର ନିକଟବର୍ତ୍ତୀ ଏକ ଉଚ୍ଚଭୂମି ଉପରେ ଗୋଟିଏ କ୍ଷୁଦ୍ର ମନ୍ଦିର ନିର୍ମିତ ହୋଇ ତନ୍ମଧ୍ୟରେ ଶ୍ରୀବିଗ୍ରହ ସ୍ଥାପିତ ହୋଇଅଛନ୍ତି ।

କଂସଟୀଳା—ଆଦିକେଶବଙ୍କ ମନ୍ଦିରର ଅନତିଦୂରରେ ପ୍ରାସାଦ ଭଗ୍ନାବଶେଷ ଇଷ୍ଟକସମୂହ ସ୍ତୂପାକାରରେ ପଡ଼ିଅଛି । ଏହାକୁ କଂସଟୀଳା କହନ୍ତି । ଏଠାରେ କଂସ ରାଜାଙ୍କର ରାଜଭବନ ଥିଲା । ଅମରେଶ୍ୱର

ରାଜା ମାନସିଂହ କଂସଟୀଳା ନିକଟରେ ଏକ ପ୍ରାସାଦ ନିର୍ମାଣ କରାଇଥିଲେ । ବର୍ତ୍ତମାନ ଏହା ପତନୋନ୍ମୁଖ ହୋଇ ରହିଅଛି ।

କଂସବଧଟୀଳା— ମଥୁରା ଷ୍ଟେସନଠାରୁ ପ୍ରାୟ ଏକ ମାଇଲ ଦୂରରେ ଏକ ଉଚ୍ଚଭୂମି ଉପରେ ଗୋଟିଏ କ୍ଷୁଦ୍ର ଦେବା ଗୃହରେ କଂସଙ୍କର ଶୟାନ ମୂର୍ତ୍ତି ତଦୁପରି ଶ୍ରୀକୃଷ୍ଣ ଓ ବଳରାମଙ୍କର ମୂର୍ତ୍ତିଦ୍ୱୟ ସ୍ଥାପିତ ହୋଇଅଛନ୍ତି । ଏଠାରେ ଶ୍ରୀକୃଷ୍ଣ କଂସକୁ ବଧ କରିଥିଲେ ।

ଧନୁର୍ଭଙ୍ଗ—ଏହା ଏକ ମୃତ୍ତିକାସ୍ତୂପ । ଏଠାରେ କଂସ ଏକ ବୃହତ୍ ଗୃହ ନିର୍ମାଣ କରାଇ ତନ୍ମଧ୍ୟରେ ଏକ ସୁବୃହତ୍ ଓ ଦୃଢ଼ ଧନୁ ସ୍ଥାପନ କରି ଧନୁଯାଗ ଆରମ୍ଭ କରିଥିଲେ ଓ ଧନୁଭଙ୍ଗ ଦେଖିବା ଛଳନାରେ ଅକ୍ରୂରକୁ ପଠାଇ ଗୋକୁଳରୁ ଶ୍ରୀକୃଷ୍ଣ ଓ ବଳରାମ ଦୁହିଙ୍କୁ ଆଣାଇଥିଲେ । ଗୋପବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ଓ ବଳରାମ ନଗରର ନାନାସ୍ଥାନରେ ଭ୍ରମଣକରି ପଥମଧ୍ୟରେ ରଜକବିନାଶ, କୁବ୍ଜା ଓ ମାଳାକାରଙ୍କୁ ଉଦ୍ଧାର କରିଥିଲେ । ଅବଶେଷରେ ଧନୁଗୃହରେ ପ୍ରବେଶ କରି ଶ୍ରୀକୃଷ୍ଣ ଅବଲୀଳାକ୍ରମେ ବୃହତ୍ ଧନୁ ଭଗ୍ନକଲେ ।

ରଙ୍ଗଭୂମି ଶ୍ରୀକୃଷ୍ଣ ଓ ବଳରାମଙ୍କ ବିନାଶ କରିବା ଉଦ୍ଦେଶ୍ୟରେ କଂସ ରଙ୍ଗଦ୍ୱାରରେ ବଳବାନ୍ କୁବଳୟାପୀଡ଼ ନାମକ ହସ୍ତୀକୁ ରଖିଥିଲେ । ବ୍ରଜବାଳକମାନଙ୍କ ସହିତ ଉଭୟଭ୍ରାତା ଦ୍ୱାରଦେଶରେ ପ୍ରବେଶ ହେବାମାତ୍ରେ ମାହୁନ୍ତଦ୍ୱାରା ଉତ୍ତେଜିତ ହୋଇ କୁବଳୟାପୀଡ଼ ଦୁହିଙ୍କର ପ୍ରାଣ ସଂହାର କରିବାକୁ ଉଦ୍ୟତ ହେବାରୁ ଶ୍ରୀକୃଷ୍ଣ ମାହୁନ୍ତସହିତ ହସ୍ତୀକୁ ବଧ କରି ତାହାର ଦନ୍ତଦ୍ୱୟକୁ ଉଭୟ ଭ୍ରାତା ସ୍କନ୍ଧନ୍ୟାସପୂର୍ବକ ରଙ୍ଗଗୃହରେ ପ୍ରବେଶ କଲେ । ରାମକୃଷ୍ଣଙ୍କ ସହିତ ମଲ୍ଲଯୁଦ୍ଧକରି ଦୁହିଙ୍କର ପ୍ରାଣନାଶ କରିବା ସକାଶେ କଂସ ଚାଣୂରାଦି ଅଷ୍ଟମଲ୍ଲଙ୍କୁ ନିଯୁକ୍ତ କରିଥିଲେ । ଶ୍ରୀକୃଷ୍ଣ ଚାଣୂରସହିତ ଓ ବଳରାମ ମୁଷ୍ଟିକସହିତ ଯୁଦ୍ଧ

କରି ଦୁହିଙ୍କୁ ବିନାଶକଲେ । ତତ୍ପରେ ଅବଶିଷ୍ଟ ମଲ୍ଲମାନଙ୍କୁ ସଂହାରକରି କଂସର ମଞ୍ଚ ନିକଟରେ ପ୍ରବେଶ ହେଲେ । କଂସ ଶ୍ରୀକୃଷ୍ଣ ଓ ବଳରାମଙ୍କ ବିକ୍ରମ ଦର୍ଶନରେ ଜୀବନାଶା ଦୂରକରି ମୃତପ୍ରାୟ ହୋଇ ରହିଥିଲା । ଶ୍ରୀକୃଷ୍ଣ ମଞ୍ଚାରୋହଣ କରି ତାହାର ପ୍ରାଣନାଶ କଲେ । ରଙ୍ଗଭୂମିରେ କୁବଳୟାପୀଡ଼ ହସ୍ତୀ ଓ ଅଷ୍ଟମଲ୍ଲମାନଙ୍କର ମୂର୍ତ୍ତିସମୂହ ଅଦ୍ୟାପି ରହିଅଛି । ନିକଟବର୍ତ୍ତୀ ଏକ କକ୍ଷରେ ବସୁଦେବ, ନନ୍ଦ, ଅକ୍ରୂର ଓ ଦେବକୀଦେବୀଙ୍କ ଅଙ୍କୋପବିଷ୍ଟ ଶ୍ରୀକୃଷ୍ଣଙ୍କର ଶ୍ରୀବିଗ୍ରହସମୂହ ସ୍ଥାପିତ ହୋଇଅଛନ୍ତି।

ଜନ୍ମସ୍ଥାନ—ମଲ୍ଲପୁରପଲ୍ଲୀ ଅନ୍ତର୍ଗତ ଆଧୁନିକ 'କାଟରା' ନାମକ ଗ୍ରାମରେ ଏକ ମୃତ୍ତିକା ସ୍ତୂପ ଅଛି । ଏହିଠାରେ କଂସଙ୍କ କାରାଗାର ଥିଲା । ତହିଁମଧ୍ୟରେ ଶ୍ରୀକୃଷ୍ଣ ଜନ୍ମଗ୍ରହଣ କରିଥିଲେ ।

ପୋତ୍ରାକୁଣ୍ଡ—ଜନ୍ମସ୍ଥାନ ସନ୍ନିକଟରେ ପ୍ରାଚୀର ପରିବେଷ୍ଟିତ ପ୍ରସ୍ତର ସୋପାନଯୁକ୍ତ ଏକ କ୍ଷୁଦ୍ର ପୁଷ୍କରିଣୀ ଅଛି । ଶ୍ରୀକୃଷ୍ଣଙ୍କ ଜନ୍ମ ପରେ ଦେବକୀ-ଦେବୀ ସୂତିକାଗୃହର ବସ୍ତ୍ରାଦି ଏଠାରେ ଧୌତ କରିଥିବାରୁ ଏହା ଏକ ପବିତ୍ରତୀର୍ଥ ଅଟେ ।

ଦେବସ୍ଥାନ—ପୋତ୍ରାକୁଣ୍ଡ ନିକଟବର୍ତ୍ତୀ ଏକ ଉଚ୍ଚ ଭୂମି ଉପରିସ୍ଥ ଏକ କକ୍ଷରେ ବସୁଦେବ ଓ ଦେବକୀଦେବୀଙ୍କ ମୂର୍ତ୍ତିଦ୍ୱୟ ମଧ୍ୟରେ ଶ୍ରୀକୃଷ୍ଣଙ୍କ ଶ୍ରୀବିଗ୍ରହ ସ୍ଥାପିତ ହୋଇଅଛି ।

ବଳଭଦ୍ରକୁଣ୍ଡ— କାଟରାଗ୍ରାମରୁ ସହରକୁ ଯିବା ପଥରେ ବଳ-ଭଦ୍ରକୁଣ୍ଡ ବିଦ୍ୟମାନ । ପ୍ରତ୍ୟେକ ବର୍ଷ ଶ୍ରାବଣ ପୂର୍ଣ୍ଣିମା ଦିବସରେ ଏଠାରେ ଏକ ମେଳା ହୁଏ ।

କୁବ୍‌ଜାକୁଣ୍ଡ—ଏହା କାଟରା ଫାଟକ ନିକଟରେ ଅବସ୍ଥିତ । କଟି-ପୃଷ୍ଠ-ଗ୍ରୀବା-କୁବ୍‌ଜତ୍ୱଯୁକ୍ତା କଦାକାରା କୁବ୍‌ଜା ନାମକ ଏକ ସ୍ତ୍ରୀ

ଉକ୍ତସ୍ଥଳରେ ଶ୍ରୀକୃଷ୍ଣ ଓ ବଳରାମ ଉଭୟଙ୍କ ନଗର ଭ୍ରମଣ ସମୟରେ ଚନ୍ଦନରେ ଚର୍ଚ୍ଚିତ କରି ସେହି ପୁଣ୍ୟଫଳରୁ ଶ୍ରୀକୃଷ୍ଣଙ୍କ କରସ୍ପର୍ଶମାତ୍ରେ ପରମାସୁନ୍ଦରୀ ରୂପ ଧାରଣ କରି ଅନ୍ତେ ଶ୍ରୀପଦ ଲାଭ କଲା । ଏଠାରେ କୁବ୍‌ଜାର ଗୃହ ଓ ସ୍ନାନ ପୁଷ୍କରଣୀ ଥିଲା ।

ଭୂତେଶ୍ୱର-- ବଳଭଦ୍ର କୁଣ୍ଡ ନିକଟରେ ଏକ ମନ୍ଦିରମଧ୍ୟରେ ସ୍ତମ୍ଭାକାର ଲିଙ୍ଗମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି । ଯଦୁବଂଶୀୟ ରାଜାମାନଙ୍କର ଭୂତେଶ୍ୱର ଉପାସ୍ୟ ଦେବତା ଓ କ୍ଷେତ୍ରପାଳ ଥିଲେ । ମଥୁରାମଣ୍ଡଳ ପରିକ୍ରମା ଏଠାରୁ ଆରମ୍ଭ ହୋଇ ଏଠାରେ ଶେଷ ହୁଏ । ଏହା ନିକଟରେ ଶିବକୁଣ୍ଡ ଅଛି ।

ମାହେଶ୍ୱରୀ— ଭୂଗର୍ଭ ସ୍ଥିତ ତମସାଚ୍ଛନ୍ନ ଏକ ମନ୍ଦିରମଧ୍ୟରେ ଚତୁର୍ଭୁଜା ଧ୍ୟାନାବସ୍ଥା ଦେବୀମୂର୍ତ୍ତି ବିରାଜମାନା । ଆଲୋକ ସାହାଯ୍ୟରେ ଅଷ୍ଟାଦଶ ସୋପାନ ଅତିକ୍ରମ କରିଗଲେ ଦେବୀଙ୍କର ଦର୍ଶନ ଲାଭହୁଏ । ଏହାଙ୍କର ଅପର ନାମ ପାତାଳେଶ୍ୱରୀ ।

ଗୋକର୍ଣ୍ଣେଶ୍ୱର—କୈଳାସ ପର୍ବତ ନାମକ ଟିଳାର ନିମ୍ନସ୍ଥଳରେ ଏକ ମନ୍ଦିର ଅଛି । ତନ୍ମଧ୍ୟରେ ଜଟାଜୁଟ ନରକପାଳହସ୍ତ ସର୍ପୋପବୀତଯୁକ୍ତ ଚନ୍ଦ୍ରଲଲାମ ପ୍ରକାଣ୍ଡ ଶିବମୂର୍ତ୍ତି ବିରାଜମାନ କରିଅଛନ୍ତି । ନିକଟରେ ପାର୍ବତୀଦେବୀ ଦଣ୍ଡାୟମାନା ।

ମହାବିଦ୍ୟା—ଗୋକର୍ଣ୍ଣେଶ୍ୱରଙ୍କ ମନ୍ଦିରନିକଟରେ ଏକ ଉଚ୍ଚଭୂମି ଉପରେ ମହାବିଦ୍ୟାଙ୍କର ମନ୍ଦିର ଅଛି । ସୋପାନାବଳି ଅତିକ୍ରମ କରି ମନ୍ଦିର ମଧ୍ୟକୁ ପ୍ରବେଶ କରି ହୁଏ । ପାଣ୍ଡବମାନେ ବନବାସ ସମୟରେ ଏହି ଦେବୀଙ୍କୁ ପୂଜା କରିଥିଲେ ।

ସତୀ ବୁରୁଜ—ଏହା ସପ୍ତତଳ ବିଶିଷ୍ଟ ରକ୍ତପ୍ରସ୍ତର ନିର୍ମିତ ଏକ ଉଚ୍ଚସ୍ତମ୍ଭ । କଂସଙ୍କ ପତ୍ନୀ ଏଠାରେ ସ୍ୱାମିଙ୍କର ସହଗମନ କରିଥିବାରୁ

ଏହାର ନାମ ସପ୍ତବୁରୁଜ ହୋଇଅଛି । କିନ୍ତୁ ଅସ୍ତି ଓ ପ୍ରାପ୍ତି ନାମକ କଂସର ପତ୍ନୀଦ୍ୱୟ ସ୍ୱାମୀ ମୃତ୍ୟୁପରେ ପିତା ଜରାସନ୍ଧ ନିକଟକୁ ଯାଇ ଶ୍ରୀକୃଷ୍ଣଙ୍କଦ୍ୱାରା ସ୍ୱାମିବଧ ହେବାର ସମ୍ବାଦ ଦେବାରୁ ଜରାସନ୍ଧ ସେହି ଆକ୍ରୋଶରେ ଅଷ୍ଟାଦଶ ବାର ମଥୁରା ଆକ୍ରମଣ କରିଥିଲା । କଂସର ଉକ୍ତ ପତ୍ନୀଦ୍ୱୟ ସହଗମନ କରି ନଥିଲେ । ସ୍ତମ୍ଭର ଉଚ୍ଚତା ପୂର୍ବେ ଅଧିକ ଥିଲା । ସମ୍ରାଟ ଆରଙ୍ଗଜେବଙ୍କଦ୍ୱାରା ଏହାର କିୟଦଂଶ ଭଗ୍ନହୋଇ ବର୍ତ୍ତମାନ ଉଚ୍ଚତା ୩୬ ହାତ ହେବ ।

ଅମ୍ବରାଧୀଶ୍ୱର ଭଗବାନଦାସଙ୍କ ଜନନୀ ତାହାଙ୍କ ସ୍ୱାମୀ ବିହାରୀମଲ୍ଲଙ୍କ ସହିତ ଏଠାରେ ଚିତାରୋହଣ କରିଥିଲେ । ଭଗବାନଦାସ ମାତାଙ୍କ ସ୍ମୃତିରକ୍ଷାର୍ଥେ ଏହି ସ୍ତମ୍ଭ ନିର୍ମାଣ କରିଥିବାର ଉକ୍ତ ସ୍ତମ୍ଭପଟରେ ଅଛି ।

ମଥୁରାନଗରର ଭିନ୍ନ ଭିନ୍ନ ସ୍ଥାନରେ ଗୋବିନ୍ଦ, ଗୋପୀନାଥ ମଦନମୋହନ ମଥୁରାନାଥ ଦ୍ୱାରକାଧୀଶ, ବଳଦେବ ଓ ଅନ୍ନପୂର୍ଣ୍ଣାଙ୍କ ଶ୍ରୀବିଗ୍ରହମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି । ଏହିସମସ୍ତ ମନ୍ଦିର ଏକଶତ ବର୍ଷମଧ୍ୟରେ ନିର୍ମିତ ହୋଇଅଛି । ମନ୍ଦିରମାନଙ୍କ ମଧ୍ୟରେ ଦ୍ୱାରକାଧୀଶଙ୍କ ମନ୍ଦିର ସର୍ବୋତ୍କୃଷ୍ଟ ଅଟେ । ସେବାପୂଜା ବାବଦ ନବାବୁ ସବାଟେଶ ୨୫ହଜାର ଟଙ୍କା ଆୟର ଭୂସମ୍ପତ୍ତି ଖଞ୍ଜା ହୋଇଅଛି । ମନ୍ଦିର ମଧ୍ୟରେ ମନୋହର ଦ୍ୱିଭୁଜ ମୁରଲୀଧରମୂର୍ତ୍ତି ଶ୍ରୀରାଧା ଓ ଲଳିତା ସଖୀଙ୍କ ସହିତ ବିରାଜମାନ କରୁଅଛନ୍ତି । ସମ୍ମୁଖରେ କଳାଡମଣ୍ଡିତ ନୟନ-ମୁଗ୍ଧକର ନାଟମନ୍ଦିର ଅଛି । ଚତୁଃପାର୍ଶ୍ୱରେ ମଥୁରାନାଥ, ବ୍ରଜନାଥ ଓ ଯମୁନାଦେବୀଙ୍କ ମୂର୍ତ୍ତିତ୍ରୟ ପ୍ରତିଷ୍ଠିତ ହୋଇଅଛନ୍ତି । ବାରିଣ୍ଡାରେ ଶ୍ରୀନିତ୍ୟାନନ୍ଦ ମହାପ୍ରଭୁଙ୍କର ମୂର୍ତ୍ତି ବିଦ୍ୟମାନ । ପ୍ରତ୍ୟହ ପ୍ରାତଃ ଓ ସନ୍ଧ୍ୟା-ସମୟରେ ଦର୍ଶନାର୍ଥେ ବହୁଲୋକଙ୍କର ସମାଗମ ହୁଏ ।

ଅକ୍ଟୋବର ମାସ ୧୯ତାରିଖ ପୂର୍ବାହ୍ନ ୯ଘଣ୍ଟା ସମୟରେ ଆମ୍ଭେମାନେ ମଥୁରାରୁ ଯାତ୍ରାକରି ଗିରିଗୋବର୍ଦ୍ଧନ, ଗିରିଧାରୀ, ହରଜ, ରାଧାକୁଣ୍ଡ, ଓ

ବିଶ୍ରାମଘାଟ ।

ଶ୍ୟାମକୁଣ୍ଡାଦି ତୀର୍ଥସମୂହ ଦର୍ଶନକରି ସନ୍ଧ୍ୟାକୁ ଫେରିଲୁଁ । ମଥୁରାରୁ ଗୋବର୍ଦ୍ଧନ ୧୬ମାଇଲ, ସେଠାରୁ ରାଧାକୁଣ୍ଡ ଦୁଇମାଇଲ ଦୂରରେ ଅବସ୍ଥିତ । ଯିବା ଆସିବା ଘୋଡ଼ାଗାଡ଼ିଭଡ଼ା ୫୩୍ୟ ପଡ଼ିଥିଲା ।

ମଥୁରାରୁ ଗୋବର୍ଦ୍ଧନ ଯିବା ରାସ୍ତାରେ ମଧୁବନ ଓ ତାଳବନ ଅଛି । ମଧୁବନ ଶ୍ରୀକୃଷ୍ଣଙ୍କର ଗୋଚାରଣ ଭୂମି ଥିଲା । ଶ୍ରୀବଳଦେବ ଧେନୁକାସୁରକୁ ବଧକରି ତାଳବନରୁ ଗୋପବାଳକମାନଙ୍କୁ ପକ୍ୱତାଳଫଳ ଭୁଞ୍ଜାଇ-ଥିଲେ ।

ଗୋବର୍ଦ୍ଧନ ଗିରିଙ୍କ ପାଦଦେଶରେ ଏକ ପୁଷ୍କରିଣୀ ଅଛି । ତହିଁର ଏକ ପାର୍ଶ୍ୱରେ କୂର୍ମପୃଷ୍ଠ ସଦୃଶ ଗୋବତ୍ସପଦାଙ୍କିତ ପ୍ରସ୍ତରମୂର୍ତ୍ତି ଏକମନ୍ଦିର ମଧ୍ୟରେ ପ୍ରତିଷ୍ଠିତ ହୋଇଅଛନ୍ତି । ଏହାଙ୍କର ନାମ ଗିରିଧାରୀ । କ୍ଷୀରଗବ୍ୟ ଦୁଗ୍ଧପୁଷ୍ପାଦି ଉପହାରଦ୍ୱାରା ପୂଜିତ ହେଉଅଛନ୍ତି । ଏହି ପୁଷ୍କରିଣୀର ଅନ୍ୟପାର୍ଶ୍ୱ ଏକ ମନ୍ଦିରମଧ୍ୟରେ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି । ତାହାଙ୍କର ବାମବାହୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ ହୋଇଅଛି ସେହି ବାହୁର କନିଷ୍ଠାଙ୍ଗୁଳି ମଧ୍ୟ ଊର୍ଦ୍ଧ୍ୱପ୍ରତି ଉତ୍ତୋଳିତ ହୋଇଅଛି । ଏହାଙ୍କର ନାମ ହରିଜୀ । ହରିଦେବ ଥିଲେ ମଧ୍ୟ ପ୍ରକୃତିରେ ଗୋବର୍ଦ୍ଧନଧାରୀ ମୂର୍ତ୍ତି ଅଟନ୍ତି । ଏଠାରେ କାର୍ତ୍ତିକ ଶୁକ୍ଲ ପ୍ରତିପଦ୍‌ଦିନ ଅନ୍ନକୂଟ ହୁଏ । ଏହି ମୂର୍ତ୍ତି ଗୋବର୍ଦ୍ଧନଙ୍କର ଅଧିଷ୍ଠାତ୍ରୀ ଦେବତା ଅଟନ୍ତି ।

ହରିଜୀଙ୍କ ମନ୍ଦିରଠାରୁ ରାଧାକୁଣ୍ଡ ପର୍ଯ୍ୟନ୍ତ ବିସ୍ତୃତ ରାସ୍ତାର ବାମପାର୍ଶ୍ୱରେ ଗୋବର୍ଦ୍ଧନଗିରି ବିଦ୍ୟମାନ । ଏହାର ଉଚ୍ଚତା ଅଧିକ ନୁହେ । ପର୍ବତ-ଗାତ୍ର ସାମାନ୍ୟ ତୃଣ, ଲତା ଓ ବୃକ୍ଷମାନଙ୍କରେ ଆବୃତ ହୋଇଅଛି । ଆରୋ-ହଣ କରିବାର ସୁବିଧାଜନକ ପଥ ନାହିଁ । ପର୍ବତରୁ ପ୍ରସ୍ତରଖଣ୍ଡ ସ୍ଥାନାନ୍ତରିତ କରିବାର ନିଷେଧ ଅଛି । ପୁରାଣବର୍ଣ୍ଣିତ ଶ୍ରୀ ଗୋବର୍ଦ୍ଧନଙ୍କର ରୂପ ବର୍ତ୍ତମାନ ଚର୍ମ୍ମଚକ୍ଷୁର ଅଗୋଚରିଁ ଅଟେ ।

ଶ୍ରୀରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ମଧ୍ୟରେ ପାଞ୍ଚହାତ ଚଉଡ଼ାର ଏକ ସେତୁ ଅଛି । ସେତୁ ସ୍ତମ୍ଭୋପରି ସ୍ଥାପିତ ହୋଇଅଛି । ତାହାନିମ୍ନରେ ଉଭୟ କୁଣ୍ଡର ଜଳ ପରସ୍ପର ମିଳିତ ହେଉଅଛି । ରାଧାକୁଣ୍ଡର ଶୁଭ୍ରଜଳ ଶ୍ୟାମକୁଣ୍ଡର ନୀଳବର୍ଣ୍ଣ ଜଳ ମିଶ୍ରିତ ହୋଇ ଗଙ୍ଗା ଓ ଯମୁନାଙ୍କ ସଙ୍ଗମ ଦୃଶ୍ୟ ଅନୁକରଣ କରୁଅଛି । ଶ୍ୟାମକୁଣ୍ଡ ନିକଟରେ ଲଳିତାକୁଣ୍ଡ ଓ ଏକ କ୍ଷୁଦ୍ର ଗୁମ୍ଫା ଅଛି । କବିରାଜ ଶ୍ରୀକୃଷ୍ଣଦାସ ଗୋସ୍ୱାମୀ ଉକ୍ତଗୁମ୍ଫାରେ ବାସକରି ଶ୍ରୀ ଚୈତନ୍ୟ-ଚରିତାମୃତ ଗ୍ରନ୍ଥ ରଚନା କରିଥିଲେ । ଶ୍ୟାମକୁଣ୍ଡର ଉତ୍ତର ଦିଗରେ ସୁବଳକୁଣ୍ଡ ଅଛି ।

ଶ୍ରୀ ଗୋବର୍ଦ୍ଧନ ନିକଟବର୍ତ୍ତୀ ଗଠୌଲି ଗ୍ରାମରେ ଶ୍ରୀରାଧାକୃଷ୍ଣଙ୍କର ଝୁଲଣ ମହୋତ୍ସବ ହୁଏ । ଏହାର ନିକଟସ୍ଥିତ ଅନ୍ୟୂର ଗ୍ରାମରେ ଶ୍ରୀକୃଷ୍ଣ ଗୋବର୍ଦ୍ଧନଗିରି ଧାରଣ କରିଥିଲେ ।

ବର୍ଷଣା ଗ୍ରାମରେ ଶ୍ରୀରାଧାଜନ୍ମଗ୍ରହଣ କରିଥିଲେ । ଉକ୍ତ ଗ୍ରାମସନ୍ନିକଟ ପର୍ବତପାର୍ଶ୍ୱରେ ବୃଷଭାନୁପୁରର ଧ୍ୱଂସାବଶେଷ ଲକ୍ଷିତହୁଏ । ବର୍ଷଣା ନିକଟରେ ଜାବଟ ଓ ନନ୍ଦଗ୍ରାମଦ୍ୱୟ ଅବସ୍ଥିତ । ଜାବଟଗ୍ରାମରେ ଅଭିମନ୍ୟୁଙ୍କର ବାସଭବନ ଥିଲା । କଂସପ୍ରେରିତ ରାକ୍ଷସମାନଙ୍କ ଦୌରାତ୍ମ୍ୟରୁ ରକ୍ଷାପାଇବା ଉଦ୍ଦେଶ୍ୟରେ ନନ୍ଦରାଜା ଗୋକୁଳ ତ୍ୟାଗ କରି ନନ୍ଦଗ୍ରାମରେ ବାସ କରିଥିଲେ । ଉକ୍ତଗ୍ରାମର ନିକଟବର୍ତ୍ତୀ ପର୍ବତଶୃଙ୍ଗସ୍ଥିତ ଏକ ଗୁମ୍ଫାରେ ନନ୍ଦ, ଯଶୋଦା ଓ ଶ୍ରୀକୃଷ୍ଣଙ୍କର ବାଳଗୋପାଳମୂର୍ତ୍ତି ପ୍ରତିଷ୍ଠିତ ହୋଇ-ଅଛନ୍ତି ।

ସଖୀଗିରିଗ୍ରାମରେ ଶ୍ରୀ ଚନ୍ଦ୍ରାବଳୀଙ୍କର ଶ୍ୱଶୁରାଳୟ ଥିଲା । ମୋହଣାଗ୍ରାମରେ ସୂର୍ଯ୍ୟଦେବଙ୍କର ଏକ ମନ୍ଦିର ଅଛି । ଏଠାରେ ଶ୍ରୀରାଧା ସୂର୍ଯ୍ୟପୂଜା କରୁଥିଲେ ।

ମାନସଗଙ୍ଗା— ଗୋବର୍ଦ୍ଧନଙ୍କ ଏକଦେଶରେ ଏହି ପୁଷ୍କରିଣୀ ଅଛି । ଶ୍ରୀକୃଷ୍ଣ ବତ୍ସାସୁରକୁ ବଧକରି ତତ୍ପରେ ଶ୍ରୀ ରାଧାଙ୍କ ନିକଟରେ

ଉପସ୍ଥିତ ହେବାରୁ ଗୋହତ୍ୟାଦୋଷରେ ଦୂଷିତ ହୋଇଥିବାର ଅପବାଦ ଦେଇ ଶ୍ରୀରାଧା ତାହାଙ୍କୁ ସ୍ପର୍ଶ କଲେନାହିଁ । ଶ୍ରୀକୃଷ୍ଣ ଦୁଃଖାଭିଭୂତ ହୋଇ ଶ୍ରୀରାଧାଙ୍କୁ ପ୍ରାର୍ଥନା କରିବାରୁ ଗଙ୍ଗାସ୍ନାନଦ୍ୱାରା ଗୋବଧଦୋଷରୁ ମୁକ୍ତ ଏବଂ ସ୍ପର୍ଶଯୋଗ୍ୟ ହେବାର ଆଦେଶ ପ୍ରାପ୍ତହୋଇଥିଲେ । ବଂଶୀଦ୍ୱାରା ଗୋବର୍ଦ୍ଧନଙ୍କ ଶୃଙ୍ଗ ଆହତକରି ଗଙ୍ଗାଙ୍କୁ ଆବିର୍ଭୂତ କରାଇ ତାହାଙ୍କ ପୂତଜଳରେ ଅବଗାହନାନ୍ତର ଶ୍ରୀରାଧାଙ୍କ ସାନ୍ନିଧ୍ୟ ପ୍ରାପ୍ତହେଲେ । କୁଣ୍ଡର ନାମ ମାନସଗଙ୍ଗା ହେଲା ।

ଶ୍ରୀଗୋପାଳ—ଗୋବର୍ଦ୍ଧନଙ୍କ ଶିଖରଦେଶରେ ଗୋବର୍ଦ୍ଧନଧାରୀ ଶ୍ରୀଗୋପାଳ ବିରାଜମାନ କରିଅଛନ୍ତି । ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର (ଅନିରୁଦ୍ଧଙ୍କ ପୁତ୍ର ବଜ୍ରନାଭ) ମଥୁରାମଣ୍ଡଳର ରଜା ହୋଇ ଶ୍ରୀ କୃଷ୍ଣଙ୍କ ଲୀଳାସ୍ଥାନସମୂହ ଆବିଷ୍କାରକରି କେତକ ଶ୍ରୀମୂର୍ତ୍ତି ସ୍ଥାପନ କରିଥିଲେ । ଶ୍ରୀଗୋପାଳ ସେମାନଙ୍କ ମଧ୍ୟରୁ ଏକ ମୂର୍ତ୍ତି ଅଟନ୍ତି । ଏକଦା ବ୍ରଜବାସିମାନେ ମ୍ଳେଚ୍ଛ ଭୟରେ ଗୋପାଳଙ୍କୁ ପର୍ବତଶିଖରରୁ ଆଣି ପାଦଦେଶସ୍ଥିତ ଏକ କୁଞ୍ଜରେ ଗୋପନ କରାଇ ଗ୍ରାମତ୍ୟାଗ କରିଥିଲେ । ଗୋପାଳ ବହୁ ଦିବସ ପର୍ଯ୍ୟନ୍ତ ନିବିଡ଼ଅରଣ୍ୟାବୃତ କୁଞ୍ଜ ମଧ୍ୟରେ ରହିଲେ । ଶ୍ରୀମାଧବେନ୍ଦ୍ର ପାଦ ପୁରୀ ଗୋସ୍ୱାମୀ ଗୋବର୍ଦ୍ଧନ ପରିକ୍ରମା କରି ପର୍ବତଦେଶରେ ଅବସ୍ଥାନ କରିବା ସମୟରେ ଶ୍ରୀଗୋପାଳଙ୍କ ସ୍ୱପ୍ନାଦେଶ କ୍ରମେ ତାହାଙ୍କୁ ଅରଣ୍ୟମଧ୍ୟରୁ ବାହାର କରି ପର୍ବତଶିଖରଦେଶରେ ପୁନଶ୍ଚ ସ୍ଥାପନ କଲେ, ଏକ କ୍ଷତ୍ରିୟ ରଜା ସେଠାରେ ମନ୍ଦିର ନିର୍ମାଣ କରାଇ ତହିଁ ମଧ୍ୟରେ ଗୋପାଳଙ୍କୁ ଭଜନ କରାଇଲେ ।

---

## ଗୋକୁଳ ।

ମଥୁରାଠାରୁ ଗୋକୁଳ ୫ ମାଇଲ ଦୂରରେ ଅବସ୍ଥିତ । ଯମୁନା ଉପରେ ନିର୍ମିତ ରେଲୱେ ପୋଲ ପାର ହୋଇଯିବାକୁ ହୁଏ । ଏଠାରେ ପ୍ରାଚୀନ କୀର୍ତ୍ତି କିଛିନାହିଁ । ପୁରାତନ ଗୋକୁଳ ଭଗ୍ନାବଶେଷ ସ୍ଥାନେ

ସ୍ଥାନେ ଦେଖାଯାଏ । ନିକଟରେ ପ୍ରୋଥକୁଣ୍ଡ ନାମକ ଏକ ପୁଷ୍କରିଣୀ ଅଛି । ଯଶୋଦାଦେବୀ ଯୋଗମାୟାଙ୍କୁ ପ୍ରସବ କରି ସୂତିକାଗୃହର ବସ୍ତ୍ରାଦି ଏହି କୁଣ୍ଡରେ ଧୋଇଥିଲେ । ଏଠାରେ କ୍ଷୁଦ୍ର କ୍ଷୁଦ୍ର କେତେକ ମନ୍ଦିର ଅଛି । ଏକମନ୍ଦିରମଧ୍ୟରେ ନନ୍ଦ, ଯଶୋଦା, ଶ୍ରୀକୃଷ୍ଣ ଓ ବଳରାମଙ୍କର ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି । ଅନ୍ୟାନ୍ୟ ମନ୍ଦିରରେ ପୂତନାବକାସୁର ବଧଦୃଶ୍ୟ, ଯଶୋଦାଦେବୀଙ୍କର ଦଧିମନ୍ଥନ ଦୃଶ୍ୟାଦି ପରିଲକ୍ଷିତ ହୁଏ । ଶ୍ରୀକୃଷ୍ଣ ଗୋପକନ୍ୟାମାନଙ୍କ ସହିତ ଜଳକ୍ରୀଡ଼ା କରୁଥିବାସ୍ଥାନର ନାମ ଚେଳଘାଟ ଓ ଯଶୋଦା, ନନ୍ଦ ଓ ଶ୍ରୀକୃଷ୍ଣଙ୍କର ସ୍ନାନ ସ୍ଥାନକୁ ନନ୍ଦ ଯଶୋଦାଘାଟ କହନ୍ତି ।

ମହାବନ ଗୋକୁଳଠାରୁ ଏକ ମାଇଲ ଦୂରରେ ଅବସ୍ଥିତ । ବର୍ତ୍ତମାନ ଏଠାରେ ବନର କୌଣସି ଚିହ୍ନ ନାହିଁ । ଏହା ନୂତନ ଗୃହାଦିରେ ପୂର୍ଣ୍ଣ ହୋଇ ଏକ କ୍ଷୁଦ୍ର ସହର ହୋଇଅଛି । ଏକସ୍ଥାନରେ ପ୍ରାସାଦର ଭଗ୍ନାବଶେଷ ଦେଖାଯାଏ । ଏହାକୁ ଅସ୍ଥିଖମ୍ବ କହନ୍ତି ।

ଦାଉଦଜି—ମହାବନଠାରୁ ସ୍ୱଳ୍ପକ୍ରୋଶ ଦୂରରେ ବଳଦେବଙ୍କର ଏକ ବୃହତ୍ ମନ୍ଦିର ଅଛି । ଯହିଁ ମଧ୍ୟରେ ରେବତୀ ଓ ବଳଦେବଙ୍କର ଶ୍ରୀବିଗ୍ରହ ଦ୍ୱୟ ପ୍ରତିଷ୍ଠିତ ହୋଇଅଛନ୍ତି । ନିକଟବର୍ତ୍ତୀ ଏକ ମନ୍ଦିରରେ ଶ୍ରୀକୃଷ୍ଣଙ୍କର ମୂର୍ତ୍ତି ବିରାଜମାନ ।

ଆମ୍ଭେମାନେ ଅକ୍ଟୋବର ମାସ ୨୦ ତାରିଖ ବେଳେ ଘୋଡ଼ାଗାଡ଼ିରେ ମଥୁରାରୁ ବୃନ୍ଦାବନ ଯାତ୍ରାକଲୁଁ । ମଥୁରାରୁ ବୃନ୍ଦାବନପର୍ଯ୍ୟନ୍ତ ରେଲ ଓ ଗାଡ଼ି ରାସ୍ତା ଅଛି । ଗାଡ଼ିଭଡ଼ା ଟ ୧୫ ପଡ଼ିଥିଲା । ୧୯୨୨ ମସିହା ଅକ୍ଟୋବରେ ମାସ ୩୧ ତାରିଖରେ ଆମ୍ଭେ ଅନ୍ୟ ସଙ୍ଗିଦ୍ୱୟଙ୍କ ସହିତ ମଥୁରାରୁ ବୃନ୍ଦାବନ ଯାଇ ସେଠାରେ ଦୁଇଦିନ ରହିଥିଲୁଁ । ଘୋଡ଼ାଗାଡ଼ି ଭଡ଼ା ୨୮ ପଡ଼ିଥିଲା । ୧୯୨୪ ମସିହା ଜୁଲାଇ ମାସ ୧୩ ତାରିଖରେ

ରେଲ ରାସ୍ତାରେ ବୃନ୍ଦାବନ ଯାଇ ସେଠାରେ ଛଅଦିନ ରହିଥିଲୁଁ ।
ରେଲ ଭଡ଼ା ଏକଜଣଙ୍କୁ ୫ ୦ ।୵ ୯ ପାଇ ଦେଇଥିଲୁ ।

---

## ବୃନ୍ଦାବନ ।

ଶ୍ରୀ ବୃନ୍ଦାବନନାମକ ନିତ୍ୟଧାମ ସର୍ବଲୋକୋପରି ପ୍ରତିଷ୍ଠିତ । ଏହାର ଅପର ନାମ ଗୋଲକ । ଗୋଲକର ନିମ୍ନସ୍ତରରେ ବୈକୁଣ୍ଠଧାମ । ଗୋଲକଧାମର ସମସ୍ତ ଐଶ୍ୱର୍ଯ୍ୟସମ୍ପନ୍ନ ନିତ୍ୟଧାମ ଗୋକୁଳ ବୃନ୍ଦାବନରେ ଓ ବୈକୁଣ୍ଠର ସର୍ବବୈଭବ ସହିତ ନିତ୍ୟଧାମ ଦ୍ୱାରକାରେ ପ୍ରତିଷ୍ଠିତ ।

ମଥୁରାମଣ୍ଡଳ ସହସ୍ରଦଳ ପଦ୍ମାକାର; ତହିଁ ମଧ୍ୟରେ ଭଦ୍ର, ଶ୍ରୀ, ଲୌହ, ଭାଣ୍ଡୀର, ମହା, ତାଳ ଖଦିର, ବକୁଳ, କୁମୁଦ, କାମ୍ୟ, ମଧୁ ଓ ବୃନ୍ଦାବନ ନାମଧେୟ ଦ୍ୱାଦଶ ବନ ଅଛି । ସେମାନଙ୍କ ମଧ୍ୟରୁ କାଳିନ୍ଦୀନଦୀର ପଶ୍ଚିମରେ ସପ୍ତ ଓ ପୂର୍ବରେ ପଞ୍ଚବନ ଅବସ୍ଥିତ । ଦ୍ୱାଦଶବନର ଚତୁର୍ଦ୍ଦିଗରେ ନାନାପ୍ରକାର ଉପବନ ଅଛି । ଗୋକୁଳନାମକ ସହସ୍ରଦଳ ପଦ୍ମର କର୍ଣ୍ଣିକାମଧ୍ୟରେ ଶ୍ରୀ ଗୋବିନ୍ଦଜୀଉଙ୍କର ମହତ୍ ଧାମ ବିଦ୍ୟମାନ । କର୍ଣ୍ଣିକାର ଅଷ୍ଟଦିଗ ଅଷ୍ଟଦଳଦ୍ୱାରା ଆବୃତ ହୋଇଅଛି । ଦକ୍ଷିଣଦିଗସ୍ଥ ଦଳରେ ମହାପୀଠ, ଅଗ୍ନିକୋଣରେ ରହସ୍ୟ ନାମକ ଦ୍ୱିତୀୟ ଦଳ, ପୂର୍ବରେ ଗଙ୍ଗାଦିତୀର୍ଥମାନଙ୍କ ସହିତ ତୃତୀୟଦଳ ଅବସ୍ଥିତ । ଐଶାନ୍ୟ କୋଣରେ ଚତୁର୍ଥଦଳ ଯୋଗପୀଠ, ଏଠାରେ ଗୋପକନ୍ୟାମାନେ ଶ୍ରୀକୃଷ୍ଣଙ୍କୁ ପତିସ୍ୱରୂପ ବରଣକରିଥିଲେ, ବସ୍ତ୍ରହରଣ ମଧ୍ୟ ହୋଇଥିଲା ।

ଉତ୍ତରଦିଗସ୍ଥ ପଞ୍ଚମଦଳ ଦ୍ୱାଦଶାଦିତ୍ୟଙ୍କର ସ୍ଥାନ । ବାୟବ୍ୟକୋଣସ୍ଥିତ ଷଷ୍ଠଦଳ ମଧ୍ୟରେ କାଳୀୟହ୍ରଦ, ପଶ୍ଚିମଦିଗସ୍ଥ ସପ୍ତମଦଳ ଯାଜ୍ଞିକ ପତ୍ନୀମାନଙ୍କର ଈପ୍ସିତ ବରପ୍ରାପ୍ତି ସ୍ଥାନ । ଏହା ନିକଟରେ ବ୍ରହ୍ମହ୍ରଦ ଅଛି । ଏଠାରେ ବ୍ରହ୍ମା ଗୋବତ୍ସ ଓ ଗୋପବାଳକମାନଙ୍କୁ ହରଣ କରି

ଶ୍ରୀକୃଷ୍ଣଙ୍କ ମାୟାରେ ମୁଗ୍ଧ ହୋଇଥିଲେ । ନୈଋତ କୋଣସ୍ଥିତ ଅଷ୍ଟମ ବନରେ ବ୍ୟୋମାସୁର ଓ ଶଙ୍ଖଚୂଡ଼ ବଧ ହୋଇଥିଲେ । ଉକ୍ତ ଧାମ ବୃନ୍ଦାବନ ମଧ୍ୟରେ ଅବସ୍ଥିତ ଓ ଯମୁନାଙ୍କ ଦ୍ୱାରା ପରିବେଷ୍ଟିତ । ଗୋପୀଶ୍ୱର ମହାଦେବ ଏଠାରେ ପ୍ରତିଷ୍ଠିତ ହୋଇଅଛନ୍ତି ।

ଷୋଡ଼ଶଦଳ ଉପରୋକ୍ତ ଅଷ୍ଟଦଳକୁ ବେଷ୍ଟନ କରିଅଛି । ପ୍ରଥମ ଦଳରେ ଶ୍ରୀକୃଷ୍ଣଙ୍କର ଲୀଳାଭୂମି ଗୋବର୍ଦ୍ଧନଗିରି ବିଦ୍ୟମାନ । ଦ୍ୱିତୀୟ-ଦଳରେ ଇନ୍ଦ୍ର ଶ୍ରୀକୃଷ୍ଣଙ୍କୁ ଗୋବିନ୍ଦନାମ ଦେଇଥିଲେ । ତୃତୀୟଦଳ ସର୍ବଶ୍ରେଷ୍ଠ । ଚତୁର୍ଥଦଳରେ ନନ୍ଦୀଶ୍ୱର ବନ ଓ ନନ୍ଦାଳୟ । ପଞ୍ଚମଦଳରେ ଶ୍ରୀକୃଷ୍ଣ ଗୋଚାରଣ କରୁଅଛନ୍ତି । ଷଷ୍ଠଦଳରେ ନନ୍ଦବନ । ସପ୍ତମଦଳରେ ବକୁଳାରଣ୍ୟ । ଅଷ୍ଟମଦଳରେ ତାଳବନ । ନବମଦଳରେ କୁମୁଦାରଣ୍ୟ । ଦଶମଦଳରେ କାମାରଣ୍ୟ ବିଦ୍ୟମାନ । ଏଠାରେ ବ୍ରହ୍ମା ଶ୍ରୀନିଲୟ କରି ଶ୍ରୀକୃଷ୍ଣଙ୍କୁ ପୂଜା କରିଥିଲେ । ଏକାଦଶଦଳରେ ବିରାଜମାନ ଶ୍ରୀକୃଷ୍ଣ ଭକ୍ତବୃନ୍ଦଙ୍କର ମଙ୍ଗଳାକାଙ୍କ୍ଷୀ । ଦ୍ୱାଦଶଦଳସ୍ଥିତ ଭଣ୍ଡୀରବନରେ ଶ୍ରୀକୃଷ୍ଣ ଶ୍ରୀଦାମାଦି ସଖାବୃନ୍ଦଙ୍କସହିତ କ୍ରୀଡ଼ା କରୁଅଛନ୍ତି । ତ୍ରୟୋଦଶଦଳରେ ଭଦ୍ରାବନ ଅଛି । ଚତୁର୍ଦ୍ଦଶଦଳ ସର୍ବସିଦ୍ଧିପ୍ରଦ ସ୍ଥାନ ଅଟେ । ଏଥିରେ ଶ୍ରୀବନ ଅଛି । ପଞ୍ଚଦଶଦଳରେ ଲୌହବନ ଓ ଷୋଡ଼ଶଦଳରେ ମହାବନ ଅଛି । ମହାବନରେ ଶ୍ରୀକୃଷ୍ଣ ଗୋପବାଳକମାନଙ୍କ ସହିତ ଗୋଚାରଣ-ଲୀଳା କରୁଅଛନ୍ତି । ଏଠାରେ ପୂତନାଶକଟାସୁର ପ୍ରାଣଶୋଷଣ, ବକାସୁରାଦିଙ୍କର ବଧ ଓ ଯମଳାର୍ଜ୍ଜୁନଭଗ୍ନ ହୋଇଥିଲା ।

ପ୍ରେମୈକରସବଶତ ପଞ୍ଚମବର୍ଷୀୟ ଦାମୋଦରାଖ୍ୟାଧାରୀ ବାଳ-ଗୋପାଳ ମହାବନରେ ଗୋପବାଳକମାନଙ୍କ ସହିତ ସତତ କ୍ରୀଡ଼ା କରୁଅଛନ୍ତି । ଭକ୍ତବୃନ୍ଦ ପ୍ରେମଚକ୍ଷୁରେ ଏହିଧାମ ଦର୍ଶନ କରିବାକୁ ସକ୍ଷମ ହୁଅନ୍ତି । ଅଜ୍ଞାନାନ୍ଧକାରାଚ୍ଛନ୍ନ ବହିର୍ମୁଖବାସନାଦୂଷିତ ଚର୍ମଚକ୍ଷୁର ଏହା ଅଗୋଚର ଅଟେ ।

ପଦ୍ମପୁରାଣ, ପାତାଳଖଣ୍ଡ, ବୃନ୍ଦାବନମାହାତ୍ମ୍ୟ ପ୍ରଥମଅଧ୍ୟାୟ ଦ୍ରଷ୍ଟବ୍ୟ ।

ଶ୍ରୀବୃନ୍ଦାବନ ସହର ମଥୁରାନଗରଠାରୁ ଆସ୍ତତଃରେ ଛୁଦ୍ର । ଶ୍ରୀଗୋବନ୍ଦ, ଗୋପୀନାଥ, ମଦନମୋହନ, ରାଧାବଲ୍ଲଭ ଓ ରାଧାଦାମୋଦରଙ୍କ ଶ୍ରୀବିଗ୍ରହସମୂହ ବହୁକାଳରୁ ପ୍ରତିଷ୍ଠିତ ହୋଇଅଛନ୍ତି । ଗୋପୀଶ୍ୱର ମହାଦେବ ବୃନ୍ଦାବନର ଅଧିଷ୍ଠାତ୍ରୀ ଦେବତା । କ୍ରମଶଃ ଧନାଢ୍ୟ ଭକ୍ତମାନଙ୍କଦ୍ୱାରା ନୂତନ ମନ୍ଦିରମାନ ନିର୍ମିତ ହୋଇ ଶ୍ରୀବିଗ୍ରହ-ସମୂହ ପ୍ରତିଷ୍ଠିତ ହୋଇଅଛନ୍ତି । ସେମାନଙ୍କମଧ୍ୟରେ ଶେଠଜୀ ଓ ଶାହାଜୀଙ୍କ ମନ୍ଦିର ଉତ୍କୃଷ୍ଟ ଅଟେ । ଶ୍ରୀ ଗୋକୁଳାନନ୍ଦ, ରାଧାରମଣ, ଶ୍ୟାମସୁନ୍ଦର, ଲାଲବାବୁଙ୍କ, ରାସବିହାରୀ, ରାଧାଗୋବିନ୍ଦ ଓ ରାଧାବଲ୍ଲଭଙ୍କ ଶ୍ରୀବିଗ୍ରହ, ଶ୍ରୀନିଧୁବନକୁଞ୍ଜ, ଧୀରସମୀର, ବଂଶୀବଟ, ବ୍ରହ୍ମକୁଣ୍ଡକୁଞ୍ଜ ଏବଂ ଲାଲାବାବୁଙ୍କ କୁଞ୍ଜରେ ପ୍ରତିଷ୍ଠିତ ଶ୍ରୀବିଗ୍ରହସମୂହ ଦର୍ଶନ କରି ଭକ୍ତମାନେ ଜନ୍ମସାର୍ଥକ କରୁଅଛନ୍ତି ।

ମୁସଲମାନଙ୍କ ରାଜତ୍ୱ ସମୟରେ ସେମାନଙ୍କ ଦୌରାତ୍ମ୍ୟରେ ପୁଣ୍ୟଭୂମି ବୃନ୍ଦାବନ ତାହାର ସମସ୍ତ ଗୌରବ ହରାଇ ବନାକୀର୍ଣ୍ଣ ହୋଇଥିଲା । ମୋଗଲ ସମ୍ରାଟମାନଙ୍କ ରାଜତ୍ୱ ସମୟରେ ମୁସଲମାନମାନଙ୍କ ଦୌରାତ୍ମ୍ୟ ଅନେକାଂଶରେ ହ୍ରାସ ହେବାରୁ ଭକ୍ତବୃନ୍ଦଙ୍କ ଉତ୍ସାହ ଓ ଯତ୍ନଦ୍ୱାରା କେତେକ ପରିମାଣରେ ବୃନ୍ଦାବନର ଶ୍ରୀବୃଦ୍ଧି ହୋଇଥିଲା । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପ୍ରକଟ ସମୟରେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଶ୍ରୀରୂପ ଓ ସନାତନ ପ୍ରମୁଖ ବୈଷ୍ଣବମଣ୍ଡଳୀ ମହାପ୍ରଭୁଙ୍କଦ୍ୱାରା ପ୍ରଣୋଦିତ ହୋଇ ଅଦମ୍ୟ ଉତ୍ସାହ ଓ ଯତ୍ନ ସହକାରେ ବୃନ୍ଦାବନର ଲୁପ୍ତକୀର୍ତ୍ତି ସମସ୍ତ ପୁନରୁଦ୍ଧାର କରିଥିଲେ । ତତ୍ପରେ ବଙ୍ଗଦେଶୀୟ ବୈଷ୍ଣବଭକ୍ତମାନଙ୍କର ସମବେତଚେଷ୍ଟା ଓ ରାଜନ୍ୟବୃନ୍ଦଙ୍କ ସହାୟତାରେ ଶ୍ରୀବୃନ୍ଦାବନର ଗୌରବ କ୍ରମଶଃ ବୃଦ୍ଧି ହେଲା । ଶ୍ରୀଚୈତନ୍ୟଦେବ ୧୪୮୫ ଖ୍ରୀଷ୍ଟାବ୍ଦରେ ପ୍ରକଟ ହୋଇ ୪୮ ବର୍ଷ ପର୍ଯ୍ୟନ୍ତ ଇହଧାମରେ ଲୀଳା ବିସ୍ତାର କରି ଅପ୍ରକଟ ହୋଇଥିଲେ ।

ପୁରାଣବର୍ଣ୍ଣିତ ମତେ ଶ୍ରୀକୃଷ୍ଣ ଇହଧାମ ତ୍ୟାଗକରି ସ୍ୱଧାମ ପ୍ରତ୍ୟାଗମନ କରନ୍ତେ ଦ୍ୱାରକାପୁରୀ ଜଳପ୍ଳାବିତହୋଇ ନଷ୍ଟ ହେଲା । ଶ୍ରୀକୃଷ୍ଣଙ୍କ ପ୍ରପୌତ୍ର (ଅନିରୁଦ୍ଧଙ୍କପୁତ୍ର ବଜ୍ରନାଭ) ମଥୁରାନଗରରେ ରାଜଧାନୀ ସ୍ଥାପନ କଲେ । ତାହାଙ୍କମାତା ରେବତୀଦେବୀ ଶ୍ରୀକୃଷ୍ଣଙ୍କବିଗ୍ରହ ନିର୍ମାଣ ସକାଶେ ପୁତ୍ରଙ୍କୁ ଆଦେଶ ଦେବାରୁ ତଦନୁସାରେ ବଜ୍ରନାଭ ଏକ ଶ୍ରୀବିଗ୍ରହ ନିର୍ମାଣ କରାଇ ମାତାଙ୍କୁ ଦେଖାଇଥିଲେ । ରେବତୀଦେବୀ ତାହା ଦେଖି ମୁଖାରବିନ୍ଦ ବ୍ୟତୀତ ଅନ୍ୟାଂଶଠିକ ହୋଇ ନଥିବାର ମତ ପ୍ରକାଶକଲେ । ଦ୍ୱିତୀୟବାର ନିର୍ମିତ ଶ୍ରୀମୂର୍ତ୍ତିଙ୍କୁ ଦେଖି କହିଲେ "ବକ୍ଷସ୍ଥଳ ବ୍ୟତୀତ ଅନ୍ୟାବୟବମାନ ଶ୍ରୀକୃଷ୍ଣଙ୍କ ସଦୃଶ ହୋଇନାହିଁ ।" ତୃତୀୟବାର ନିର୍ମିତ ଶ୍ରୀ ବିଗ୍ରହଙ୍କୁ ଦେଖି କହିଲେ "ପାଦପଦ୍ମ ବ୍ୟତୀତ ଅନ୍ୟାଂଶ ଠିକ ହୋଇନାହିଁ ।" ତତ୍ପରେ ବଜ୍ରନାଭ ଅନ୍ୟ ଶ୍ରୀବିଗ୍ରହ ଗଢ଼ାଇବା ଇଚ୍ଛା ତ୍ୟାଗ କରି ମାତାଙ୍କ ଆଦେଶାନୁସାରେ ମୂର୍ତ୍ତିତ୍ରୟଙ୍କୁ ପ୍ରତିଷ୍ଠା ଓ ଶ୍ରୀଗୋବିନ୍ଦ, ଶ୍ରୀ ଗୋପୀନାଥ, ଶ୍ରୀ ମଦନମୋହନ ଆଖ୍ୟା ପ୍ରଦାନ କରି ପୂଜାର ସୁବନ୍ଦୋବସ୍ତ କରିଥିଲେ । ଶ୍ରୀକୃଷ୍ଣଙ୍କ ଲୀଳାସ୍ଥାନମାନଙ୍କରେ ବଜ୍ରନାଭ ଯେ ସମସ୍ତ ମନ୍ଦିର ନିର୍ମାଣ ଓ କୂପ, ପୁଷ୍କରିଣୀସମୂହ ଖନନ କରାଇଥିଲେ କାଳକ୍ରମେ ସେ ସବୁ ଭୂଗର୍ଭରେ ଲୀନ ହୋଇଥିଲା ।

---

## ଶ୍ରୀ ମଦନମୋହନ ।

ଶାନ୍ତିପୁର ନିବାସୀ ଅଦ୍ୱୈତାଚାର୍ଯ୍ୟ ଗୋସ୍ୱାମୀ ଶ୍ରୀଚୈତନ୍ୟଦେବଙ୍କ ପ୍ରକଟ ପୂର୍ବରୁ ଶ୍ରୀବୃନ୍ଦାବନକୁ ଆସି ଦ୍ୱାଦଶାଦିତ୍ୟ ଟିଲା ମଧ୍ୟସ୍ଥିତ ଏକ ବୃକ୍ଷମୂଳରେ ପର୍ଣ୍ଣକୁଟୀର ନିର୍ମାଣ କରି ବାସ କରୁଥିଲେ । ସେ ତାହାଙ୍କ କୁଟୀର ନିକଟରେ ଏକ ମନ୍ଦିରର ଧ୍ୱଂସାବଶେଷ ଦେଖି ଉକ୍ତ ସ୍ଥାନ ଖନନ କରାଇ ମଦନଗୋପାଳଙ୍କ ଶ୍ରୀବିଗ୍ରହ ପ୍ରାପ୍ତହୋଇ ପ୍ରତିଷ୍ଠା କରାଇଥିଲେ । ଅଦ୍ୱୈତାଚାର୍ଯ୍ୟ ବୃନ୍ଦାବନ ତ୍ୟାଗ କରି ଯିବାର କେତେକ ସମୟ ପରେ ମଥୁରାନିବାସୀ ଏକ ଚୌବେ ମଦନଗୋପାଳଙ୍କୁ ନିଜ ଗୃହକୁ

ନେଇ ପୂଜା କରୁଥିଲେ । ଶ୍ରୀସନାତନଗୋସ୍ୱାମୀ ମଥୁରାରୁ ଗୋପାଳଙ୍କୁ ଆଣି ନିଜ ପର୍ଣ୍ଣକୁଟୀରରେ ପ୍ରତିଷ୍ଠିତ କରି ଭିକ୍ଷାଲବ୍ଧ ଅନ୍ନ ଓ ଶାକାନ୍ନ ସମର୍ପଣ କରୁଥିଲେ । ମୂଲତାନ ନଗରନିବାସୀ ଧନାଢ୍ୟ ବଣିକ ରାମଦାସଙ୍କ ବାଣିଜ୍ୟ ପୋତ ଗୋପାଳଙ୍କ କୃପାବଶତଃ ସମୁଦ୍ରମଧ୍ୟରେ ପ୍ରଚଣ୍ଡବାତ୍ୟାରୁ ରକ୍ଷିତ ହେବାରୁ ରାମଦାସ ତାଙ୍କ ଅର୍ଥବ୍ୟୟରେ ଏକ ମନ୍ଦିର ନିର୍ମାଣ କରାଇ ତହିଁ ମଧ୍ୟରେ ମଦନଗୋପାଳଙ୍କୁ ପ୍ରତିଷ୍ଠା କଲେ । ଗୋପାଳଙ୍କର ନାମ ମଦନମୋହନ ହେଲା । ରାମଦାସଙ୍କ ପ୍ରଦତ୍ତ ଭୂସମ୍ପତ୍ତିର ଉତ୍ପନ୍ନରୁ ସେବା ପୂଜା ସୁଚାରୁରୂପେ ନିର୍ବାହ ହେଲା । ସନାତନଗୋସ୍ୱାମୀଙ୍କ ବୈରାଗ୍ୟ ନିଦର୍ଶନ ସ୍ୱରୂପ ଅଗ୍ନିସିଦ୍ଧ ଗୋଲାକାର ରୁଟି ଓ ଶାକ ପ୍ରତ୍ୟହ ଶ୍ରୀଭଗବାନଙ୍କୁ ଅର୍ପଣ ହେବାପରେ ଅନ୍ୟାନ୍ୟ ଭୋଗ ହୁଏ ।

ରାମଦାସଙ୍କ ନିର୍ମିତ ମନ୍ଦିର ଆରଙ୍ଗଜେବ ବାଦଶାହାଙ୍କ ଆଦେଶାନୁସାରେ ଭଗ୍ନ ହୋଇଥିଲା । ସେ ସମୟରେ ଶ୍ରୀମଦନମୋହନ, ଗୋବିନ୍ଦ, ଗୋପୀନାଥ, ରାଧାଦାମୋଦର ଓ ରାଧାବିନୋଦଙ୍କର ଶ୍ରୀ ବିଗ୍ରହମାନଙ୍କୁ ଜୟପୁରର ରାଜା ଜୟସିଂହ ଗୋପନ ଭାବେ ନିଜ ରାଜ୍ୟକୁ ନେଇରଖିଥିଲେ । ଆରଙ୍ଗଜେବଙ୍କର ମୃତ୍ୟୁପରେ ବ୍ରଜବାସୀ ସେବକମାନେ ଶ୍ରୀବିଗ୍ରହମାନଙ୍କୁ ବୃନ୍ଦାବନରେ ପୁନଶ୍ଚ ପ୍ରତିଷ୍ଠା କରିବାସକାଶେ ରାଜାଙ୍କୁ ପ୍ରାର୍ଥନା କଲେ, କିନ୍ତୁ ରାଜା ଜୟସିଂହ ଶ୍ରୀବିଗ୍ରହମାନଙ୍କର ମନୋହର ମୂର୍ତ୍ତିଦର୍ଶନରେ ବିମୁଗ୍ଧହୋଇ ସେମାନଙ୍କୁ ପ୍ରତ୍ୟର୍ପଣ ନକରି ସୁଦକ୍ଷ ଶିଳ୍ପକାରଙ୍କଦ୍ୱାରା ତଦ୍ରୂପ ମୂର୍ତ୍ତିସମୂହ ସଗଠନ କରି ବ୍ରଜବାସିମାନଙ୍କ ହସ୍ତରେ ଅର୍ପଣ କରିଥିଲେ । ବର୍ତ୍ତମାନ ଶ୍ରୀଗୋବିନ୍ଦ ଓ ଗୋପୀନାଥଙ୍କ ମୂର୍ତ୍ତିଦ୍ୱୟ ଜୟପୁରରେ ଓ ଶ୍ରୀମଦନମୋହନ କରୌଲୀରେ ବିରାଜମାନ କରୁଅଛନ୍ତି । କରୌଲୀର ରାଜା ଗୋପାଳସିଂହଙ୍କର ଜୟସିଂହ ଭଗ୍ନୀପତି ଥିଲେ । ଜୟସିଂହ ଶାଳକଙ୍କର ପ୍ରାର୍ଥନାମତେ ମଦନମୋହନଙ୍କୁ ତାହାଙ୍କ ହସ୍ତରେ ଅର୍ପଣ କରିଥିଲେ । କରୌଲୀ ବା କରୋଲୀ ରାଜ୍ୟ ଦକ୍ଷିଣରୁ

ବମ୍ବେ ପର୍ଯ୍ୟନ୍ତ ବିସ୍ତୃତ ରେଲରାସ୍ତା ମଧ୍ୟସ୍ଥିତ ସିଉଁମାଧପୁର ଷ୍ଟେସନ୍ ଠାରୁ ୧୭କୋଶ ଦୂରରେ ଅବସ୍ଥିତ । ଗାଡ଼ି ଓ ମଟର ଉକ୍ତ ରାସ୍ତାରେ ଯାତାୟାତ କରେ । ସିଉଁମାଧପୁର ମଥୁରାଠାରୁ ୧୩୪ ମାଇଲ ଦୂର ।

---

## ଶ୍ରୀ ଗୋବିନ୍ଦ ଜିଉ ।

ଶ୍ରୀରୂପ ଗୋସ୍ୱାମୀ ବୃନ୍ଦାବନରେ ବାସ କରୁଥିବା ସମୟରେ ତାହାଙ୍କ ପର୍ଣ୍ଣକୁଟୀର ନିକଟବର୍ତ୍ତୀ ଏକ ସ୍ଥାନରେ ଗୋଟିଏ ଗାଈର ଉଧରୁ ଦୁଗ୍ଧ ସ୍ୱତଃ କ୍ଷରିତହେଉଥିବାର ସମ୍ବାଦ ପାଇ ଉକ୍ତସ୍ଥାନକୁ ଖନନ କରାଇ-ବାରେ ଭୂଗର୍ଭରୁ ଶ୍ରୀ ଗୋବିନ୍ଦ ଜିଉଙ୍କର ଶ୍ରୀମୂର୍ତ୍ତି ପ୍ରକଟ ହେଲା । ଆବିଷ୍କୃତ ଶ୍ରୀବିଗ୍ରହ ବଜ୍ରନାଭଙ୍କ ପ୍ରତିଷ୍ଠିତ ଶ୍ରୀଗୋବିନ୍ଦଜିଉ ଥିବାର ନିଶ୍ଚୟ କରି ତାହାଙ୍କୁ ନିଜ ପର୍ଣ୍ଣକୁଟୀର ସନ୍ନିକଟ ଏକ କୁଟୀରରେ ପ୍ରତିଷ୍ଠା କଲେ । ଅମ୍ବରେଶ୍ୱର ରାଜା ମାନସିଂହ ଶ୍ରୀମୂର୍ତ୍ତି ଦର୍ଶନରେ ସନ୍ତୁଷ୍ଟ ହୋଇ ବହୁ ଅର୍ଥବ୍ୟୟରେ ନାନାବିଧ ଶିଳ୍ପକଳାବିମଣ୍ଡିତ ଏକ ପ୍ରକାଣ୍ଡ ମନ୍ଦିର ନିର୍ମାଣ କରାଇ ତହିଁ ମଧ୍ୟରେ ଶ୍ରୀଗୋବିନ୍ଦଜିଉଙ୍କୁ ବିରାଜମାନ କରାଇଲେ । ଭାରତ-ବର୍ଷ ମଧ୍ୟସ୍ଥିତ ମନ୍ଦିରମାନଙ୍କ ମଧ୍ୟରେ ଏହି ମନ୍ଦିର ପ୍ରଥମ ସ୍ଥାନ ଅଧିକାର କରିଥିଲା । ଏହାର ଉଚ୍ଚ ଚୂଡ଼ା ଦିଲ୍ଲୀ ନଗରକୁ ଦେଖାଯାଉଥିବାରୁ ତଦ୍ଦର୍ଶନରେ ସମ୍ରାଟ ଆରଙ୍ଗଜେବ ଈର୍ଷାପରବଶ ହୋଇ ଏହାର ସପ୍ତ ତଳରୁ ଉପର ତିନିତଳ ଭଗ୍ନ କରାଇଥିଲେ । ବର୍ତ୍ତମାନ ଅବଶିଷ୍ଟାଂଶର ଗଠନସୌଷ୍ଠବ ଓ ଶିଳ୍ପନୈପୁଣ୍ୟ ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଏହାର ନାମ ପୁରୁଣା ମନ୍ଦିର । ଏଥିରେ ଶ୍ରୀଗିରିଧାରୀ, ଶ୍ରୀଗୌରାଙ୍ଗ ଓ ଶ୍ରୀନିତ୍ୟାନନ୍ଦଙ୍କର ବିଗ୍ରହତ୍ରୟ ପ୍ରତିଷ୍ଠିତ ହୋଇଅଛନ୍ତି । ଶ୍ରୀରାଧା କୃଷ୍ଣଙ୍କର ଲୀଳା ସଂଘଟକାରିଣୀ ଯୋଗମାୟାମନ୍ଦିର ନୈକଟ୍ୟରେ ଭୂଗର୍ଭସ୍ଥ ତମିସ୍ରାଚ୍ଛନ୍ନ ଏକ ମନ୍ଦିରମଧ୍ୟରେ ବିରାଜମାନ କରୁଅଛନ୍ତି । ପୁରାତନ ମନ୍ଦିରର ପଶ୍ଚାଦ୍‌ଭାଗରେ ବଙ୍ଗଦେଶବାସୀ ଦେଓ୍ୱାନ ନନ୍ଦକୁମାରଙ୍କ ଦ୍ୱାରା ଏକ ନୂତନ ମନ୍ଦିର ନିର୍ମିତ ହୋଇ ତହିଁ ମଧ୍ୟରେ ଶ୍ରୀଗୋବିନ୍ଦ

ଜପ ତପେ କରିଥାନ୍ତି । ପ୍ରତ୍ୟହ ସନ୍ଧ୍ୟାରେ ଶତଶତ ଭକ୍ତବୃନ୍ଦ ସମ୍ମିଳିତ ହୋଇ ସ୍ତୁତିପାଠ ଓ ଜୟଧ୍ୱନିଦ୍ୱାରା ମନ୍ଦିର ପ୍ରାଙ୍ଗଣ ମୁଖରିତ କରନ୍ତି ।

ଶ୍ରୀ ଗୋବର୍ଦ୍ଧନଙ୍କ ପ୍ରକଟ ସ୍ଥାନରେ ଗୋବର୍ଦ୍ଧନକୁଣ୍ଡ ବିଦ୍ୟମାନ । ଏହିସ୍ଥାନକୁ ଯୋଗପୀଠ କହନ୍ତି ।

---

## ଶ୍ରୀ ଗୋପୀନାଥ ।

ମଧୁପଣ୍ଡିତ ନାମକ ଏକ ଭକ୍ତ ବୃନ୍ଦାବନରେ ବାସ କରୁଥିବା ସମୟରେ ବୈଦିକ ଦେବତେମେ ବଂଶୀବଟର ମୂଳ ଖୋଳନକରି ସେଠାରୁ ଶ୍ରୀଗୋପୀନାଥଙ୍କର ଶ୍ରୀବିଗ୍ରହ ପ୍ରାପ୍ତ ହେଲେ । ଶ୍ରୀମୂର୍ତ୍ତି ବଜ୍ରନାଭଙ୍କ ପ୍ରତିଷ୍ଠିତ ଶ୍ରୀବିଗ୍ରହ ଥିବାର ନିଶ୍ଚୟକରି ପ୍ରତିଷ୍ଠା କରିଥିଲେ । କିଛିକାଳପରେ ରାଜପୁତାନା ନିବାସୀ ଏକ ଧନାଢ୍ୟ ବଣିକ ଗୋଟିଏ ସୁନ୍ଦରମନ୍ଦିର ନିର୍ମାଣ କରାଇ ତନ୍ମଧ୍ୟରେ ଶ୍ରୀଗୋପୀନାଥଙ୍କୁ ସ୍ଥାପନ କଲେ । ଆରଙ୍ଗଜେବ୍ ବାଦସାହାଙ୍କ ରାଜତ୍ୱ ସମୟରେ ତାହାଙ୍କ ଆଦେଶାନୁସାରେ ଉକ୍ତ ମନ୍ଦିର ଭଗ୍ନ ହୋଇଥିଲା । କେତେକ କାଳପରେ ବଙ୍ଗବାସୀ ନନ୍ଦକୁମାର ଏକ ନୂତନମନ୍ଦିର ତୟାର କରାଇ ତହିଁରେ ଶ୍ରୀବିଗ୍ରହଙ୍କୁ ପ୍ରତିଷ୍ଠିତ କଲେ । ବର୍ତ୍ତମାନ ପୁରାତନ ମନ୍ଦିରର ଧ୍ୱଂସାବଶେଷ ଦୃଷ୍ଟିଗୋଚର ହୁଏ ।

ବଜ୍ରନାଭଙ୍କ ପ୍ରତିଷ୍ଠିତ ଶ୍ରୀଗୋବିନ୍ଦ, ଗୋପୀନାଥ ଓ ମଦନମୋହନଙ୍କର ବାମପାର୍ଶ୍ୱରେ ଶ୍ରୀରାଧାରାଣୀ ପ୍ରତିଷ୍ଠିତା ହୋଇ ନ ଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପ୍ରକଟନାନନ୍ତର ଗୋସ୍ୱାମୀମାନେ ଶ୍ରୀରାଧାରାଣୀଙ୍କୁ ପ୍ରତିଷ୍ଠା କରିଥାନ୍ତି । ଶ୍ରୀବଙ୍କବିହାରୀଙ୍କର ବାମପାର୍ଶ୍ୱରେ ଶ୍ରୀରାଧା ନାହାନ୍ତି ।

ଶ୍ରୀ ରାଧାବଲ୍ଲଭ ବହୁକାଳ ପ୍ରତିଷ୍ଠିତ ଦେବତା । ଶ୍ରୀରାଧାଦାମୋଦର, ଶ୍ରୀରାଧାବିନୋଦ, ଶ୍ରୀରାଧାରମଣ, ଶ୍ରୀଶ୍ୟାମସୁନ୍ଦର ଓ ଶ୍ରୀରାଧାଗୋବିନ୍ଦ-

ଙ୍କର ଶ୍ରୀବିଗ୍ରହସମୂହ, ଶ୍ରୀଜୀବଗୋସ୍ୱାମୀ, ଲୋକନାଥ ଗୋସ୍ୱାମୀ, ଗୋପାଳଭଟ୍ଟଗୋସ୍ୱାମୀ, ଶ୍ୟାମାନନ୍ଦଗୋସ୍ୱାମୀ ଓ ଦେଓ୍ୟାନ ନନ୍ଦକୁମାର ପ୍ରଭୃତିଙ୍କଦ୍ୱାରା କ୍ରମେ କ୍ରମେ ପ୍ରତିଷ୍ଠିତ ହୋଇଅଛନ୍ତି । ଏତଦ୍‌ଭିନ୍ନ ଶ୍ରୀକଶୋରୀକିଶୋର, ଶ୍ରୀଗୋକୁଳାନନ୍ଦ, ଷଡ଼୍‌ଭୁଜ ଚୈତନ୍ୟଦେବ, ଶୃଙ୍ଗାର ଗୌରାଙ୍ଗାଦିଙ୍କର ଶ୍ରୀବିଗ୍ରହ ସମସ୍ତ ଅନ୍ୟାନ୍ୟ ଗୋସ୍ୱାମିମାନଙ୍କ ଦ୍ୱାରା କ୍ରମଶଃ ପ୍ରକାଶ ହୋଇଥିଲେ । ଶ୍ରୀବଙ୍କବିହାରୀଙ୍କ ବ୍ୟତୀତ ଉପରୋକ୍ତ ଶ୍ରୀବିଗ୍ରହମାନଙ୍କର ସେବାପୂଜାଦି କାର୍ଯ୍ୟ ବଙ୍ଗବାସୀ ଗୋସ୍ୱାମିମାନଙ୍କର ବଂଶଧରମାନେ ପୁରୁଷାନୁକ୍ରମେ କରି ଆସୁଅଛନ୍ତି । ଜୟପୁରରେ ପ୍ରତିଷ୍ଠିତ ଶ୍ରୀଗୋବିନ୍ଦ ଓ ଗୋପୀନାଥଙ୍କର ସେବକମାନେ ମଧ୍ୟ ଉକ୍ତ ଗୋସ୍ୱାମୀମାନଙ୍କର ବଂଶଧର ଅଟନ୍ତି । ବ୍ରଜବାସିମାନଙ୍କର ଏଥିରେ କୌଣସି ସ୍ୱତ୍ୱ ବା ଅଧିକାର ନାହିଁ ।

---

## ଶ୍ରୀ ବଙ୍କବିହାରୀ ।

ବୃନ୍ଦାବନ ସହର ମଧ୍ୟସ୍ଥିତ ନିଧୁବନରୁ ବଙ୍କବିହାରୀଙ୍କର ଶ୍ରୀବିଗ୍ରହ ଭକ୍ତାଗ୍ରଣୀ ଶ୍ରୀହରିଦାସଙ୍କ ଦ୍ୱାରା ପ୍ରକଟ ହୋଇଥିଲେ । ବର୍ତ୍ତମାନ ସହରର ଏକପାର୍ଶ୍ୱସ୍ଥିତ ଶ୍ରୀମଦନମୋହନଙ୍କ ମନ୍ଦିରର ଅନତିଦୂରରେ ଶ୍ରୀବଙ୍କବିହାରୀ ପ୍ରତିଷ୍ଠିତ ହୋଇଅଛନ୍ତି । ଶ୍ରୀବିଗ୍ରହ ତ୍ରିଭଙ୍ଗ ମୁରଲୀଧାରୀ ନଟବରମୂର୍ତ୍ତି ନୁହନ୍ତି । ଶ୍ରୀ ରାଧାରାଣୀଙ୍କଦ୍ୱାରା ଏହାଙ୍କର ବାମଭାଗ ସୁଶୋଭିତ ହୋଇନାହିଁ । ଶ୍ରୀମୂର୍ତ୍ତି ସରଳଭାବରେ ଦଣ୍ଡାୟମାନ ହୋଇଅଛନ୍ତି । ବୈଶାଖ ଶୁକ୍ଳ ତୃତୀୟା ଦିବସ ବ୍ୟତୀତ ଅନ୍ୟ ସମୟରେ ଶ୍ରୀବିଗ୍ରହଙ୍କର ପାଦପଦ୍ମଦ୍ୱୟ ପରିଧେୟ ବସ୍ତ୍ରଦ୍ୱାରା ଆଚ୍ଛାଦିତ ହୋଇ ଥାଏ । ଅକ୍ଷୟ ତୃତୀୟା ଦିବସ ପାଦପଦ୍ମ ଦର୍ଶନ ମିଳେ । ଶ୍ରୀବଙ୍କବିହାରୀଙ୍କର ଦର୍ଶନ ଦୀର୍ଘକାଳସ୍ଥାୟୀ ନୁହେ । ଗର୍ଭଗୃହର ଦ୍ୱାର ଉନ୍ମୁକ୍ତ ଥିଲେ ସୁଦ୍ଧା ଏକ ଆବରଣ (ପର୍ଦ୍ଦା) ଦ୍ୱାରା ଆବୃତ ଥିବାରୁ ଶ୍ରୀମୂର୍ତ୍ତି ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ସେବକମାନଙ୍କଦ୍ୱାରା ଆବରଣ କ୍ଷଣକାଳନିମନ୍ତେ ଅପସାରିତ

ହୋଇ ଦର୍ଶନ ଲାଭ ହୁଏ । ସେମାନେ ତାଙ୍କୁ ଦର୍ଶନ କରନ୍ତି । ଶ୍ରୀବିଗ୍ରହଙ୍କର ସେବାପୂଜା ବ୍ରଜବାସିମାନଙ୍କଦ୍ୱାରା ପରିଚାଳିତ ହୁଏ । ବଙ୍ଗଦେଶୀ ଗୋସ୍ୱାମିମାନଙ୍କର ଏଠାରେ କୌଣସି କର୍ତ୍ତୃତ୍ୱ ନାହିଁ ।

ଶ୍ରୀ ରଙ୍ଗଜୀଙ୍କ ମନ୍ଦିର ଶେଠ ମନ୍ଦିର ନାମେ ଅଭିହିତ । ଦାକ୍ଷିଣାତ୍ୟ ନିବାସୀ ବୈଷ୍ଣବ ଗୁରୁ ଶ୍ରୀ ରଙ୍ଗାଚାର୍ଯ୍ୟଙ୍କ ଆଦେଶାନୁସାରେ ଶେଠ ଲକ୍ଷ୍ମୀଚାନ୍ଦ ୧୮୫୦ ଖ୍ରୀଷ୍ଟାବ୍ଦରେ ତ୍ରିଚିନାପଲ୍ଲୀ ସହରର ମଧ୍ୟସ୍ଥିତ ଶ୍ରୀରଙ୍ଗନାଥଦେବଙ୍କ ମନ୍ଦିରର ଅନୁକରଣରେ ଏହି ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିରର ଚୂଡ଼ା, ଧ୍ୱଜ ଓ କଳଶ ସୁବର୍ଣ୍ଣ ପତ୍ରଦ୍ୱାରା ଜଡ଼ିତ; ଚତୁର୍ଦ୍ଦିଗ ଉଚ୍ଚ ପ୍ରସ୍ତର ପ୍ରାଚୀରଦ୍ୱାରା ବେଷ୍ଟିତ । ପ୍ରଥମ ପ୍ରାଚୀରର ପୂର୍ବପଟରେ ଉନ ଓ ପଶ୍ଚିମଭାଗରେ ଦୁଇଗୋଟି ଗୋପୁରମ୍ ଅଛି । ଅଭ୍ୟନ୍ତରରେ ଦୁଇଗୋଟି ସୁପ୍ରଶସ୍ତ ପ୍ରାଙ୍ଗଣ ଚତୁର୍ଦ୍ଦିଗ ବେଷ୍ଟନ କରିଅଛି । ପ୍ରାଙ୍ଗଣର ଏକ ପାର୍ଶ୍ୱରେ ସେବକମାନଙ୍କର ବାସଭବନ ଅଛି । ମଧ୍ୟଦେଶରେ ପ୍ରସ୍ତର ପାଛଉଡ଼ିଯୁକ୍ତ ଏକ ପୁଷ୍କରିଣୀ । ତାହାର ନିକଟରେ ଏକ ମନୋରମ ଉଦ୍ୟାନ ଅଛି । ମନ୍ଦିରର ସମ୍ମୁଖରେ ଷୋଳଶ ହସ୍ତ ଉଚ୍ଚ ସ୍ୱର୍ଣ୍ଣପତ୍ରାବୃତ ଏକ ସ୍ତମ୍ଭ ଦଣ୍ଡାୟମାନ । ଏଥିରେ ଅର୍ଦ୍ଧ ବାରମହଣ ସୁବର୍ଣ୍ଣ ଲାଗିଥିବାର କହନ୍ତି । ସ୍ତମ୍ଭର ଉପରିଭାଗରେ ଗରୁଡ଼ କିମ୍ବା ଅନ୍ୟ କୌଣସି ଦେବତାଙ୍କର ମୂର୍ତ୍ତି ସ୍ଥାପିତ ହୋଇନାହାନ୍ତି । ଏହି ସ୍ତମ୍ଭର ନାମ ସ୍ୱର୍ଣ୍ଣତାଳଗଛ ।

ମନ୍ଦିରମଧ୍ୟରେ ଶ୍ରୀରଙ୍ଗନାଥଙ୍କର ଜଗନ୍ମୋହନ ମୂର୍ତ୍ତି ବିରାଜିତ । ବାମ ଓ ଦକ୍ଷିଣ ଉଭୟ ପାର୍ଶ୍ୱେ ଶ୍ରୀଲକ୍ଷ୍ମୀଦେବୀ ଓ ବଳଦେବଙ୍କ ଦ୍ୱାରା ସୁଶୋଭିତ ହୋଇଅଛି । ବାହାର କକ୍ଷମାନଙ୍କରେ ଶ୍ରୀନୃସିଂହ, ଶ୍ରୀରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ଓ ସୁଦର୍ଶନଙ୍କର ମୂର୍ତ୍ତିସମୂହ ପ୍ରତିଷ୍ଠିତ ହୋଇଅଛନ୍ତି । ସେବାପୂଜା ବ୍ୟୟ ନିର୍ବାହ ସକାଶେ ପ୍ରଚୁର ଭୂସମ୍ପତ୍ତି ପ୍ରଦତ୍ତ ହୋଇଅଛି । ଯାନଯାତ୍ରା ମହାସମାରୋହର ସହିତ ସମ୍ପାଦିତ ହୁଏ ।

ଶ୍ରୀବୃନ୍ଦାବନମଧ୍ୟସ୍ଥିତ ମନ୍ଦିରମାନଙ୍କମଧ୍ୟରେ ସାହଜୀଙ୍କର ମନ୍ଦିର ସର୍ବୋତ୍କୃଷ୍ଟ ଅଟେ । ଲକ୍ଷ୍ନୌସହର ନିବାସୀ ଚନ୍ଦ୍ରାଶ୍ରମଲାଲ ସାହାଙ୍କ ଦ୍ୱାରା ଏହା ନିର୍ମିତ ହୋଇଥିଲା । ଶ୍ରୀମନ୍ଦିର, ତତ୍ସଂଲଗ୍ନ ଅଳିନ୍ଦ ଓ ପ୍ରାଙ୍ଗଣସମୂହ ଶ୍ୱେତ ମର୍ମ୍ମର ପ୍ରସ୍ତରଦ୍ୱାରା ଆବୃତ ହୋଇଅଛି । ଅଳିନ୍ଦ (ବାରଣ୍ଡାର) ଏକପାର୍ଶ୍ୱରେ ଭକ୍ତମାନଙ୍କ ପଦରଜାକାଙ୍କ୍ଷୀ ବଦାନ୍ୟସାହାଙ୍କ ମୂର୍ତ୍ତି ଅଙ୍କିତ ହୋଇଅଛି । ଗର୍ଭଗୃହ ସମ୍ମୁଖସଂଲଗ୍ନ ନାଟମନ୍ଦିର ଭିତ୍ତିମାନଙ୍କ ଗାତ୍ର ମନୋହର ମୂର୍ତ୍ତିମାନଙ୍କଦ୍ୱାରା ସୁସଜ୍ଜିତ ହୋଇଅଛି । ସେମାନଙ୍କର ପରିଧେୟ ବସ୍ତ୍ର ଓ ଅଳଙ୍କାରାଦି ପୃଥକ୍ ରଙ୍ଗର ମର୍ମ୍ମର ପ୍ରସ୍ତରଦ୍ୱାରା ଜଡ଼ିତ ହୋଇ ଅପୂର୍ବ ଶୋଭା ଧାରଣ କରିଅଛି । ମନ୍ଦିରମଧ୍ୟରେ ଶ୍ରୀରାଧା-ରମଣଙ୍କର କ୍ଷୁଦ୍ର ଶ୍ରୀବିଗ୍ରହ ବିରାଜମାନ କରିଅଛନ୍ତି ।

ଲାଲବାବୁଙ୍କ କୁଞ୍ଜ ଶ୍ରୀ ରଙ୍ଗନାଥଙ୍କ ମନ୍ଦିର ନିକଟରେ ଅବସ୍ଥିତ । ୧୮୧୦ ଖ୍ରୀଷ୍ଟାବ୍ଦରେ ପାଇକପଡ଼ାର ରାଜା କୃଷ୍ଣଚନ୍ଦ୍ର ସିଂହ ଉକ୍ତ ମନ୍ଦିର ନିର୍ମ୍ମାଣ କରାଇ ତହିଁ ମଧ୍ୟରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମୂର୍ତ୍ତିଦ୍ୱୟ ପ୍ରତିଷ୍ଠା କରାଇଥିଲେ । ସେବାପୂଜାର ସୁବନ୍ଦୋବସ୍ତ ହୋଇଅଛି । ଉପସ୍ଥିତ ବହୁସଂଖ୍ୟକ ସାଧୁ, ଅତିଥି ଓ ବୈଷ୍ଣବମାନେ ପ୍ରତ୍ୟହ ମିଷ୍ଟାନ୍ନ ପ୍ରସାଦ ସେବନ କରି ଦାତାଙ୍କର ମଙ୍ଗଳ କାମନା କରୁଅଛନ୍ତି ।

ବ୍ରହ୍ମଚାରୀ କୁଞ୍ଜ ଗିରିଧାରୀ ଦାସ ବ୍ରହ୍ମଚାରୀଙ୍କର ପ୍ରାର୍ଥନାନୁସାରେ ଗୋୟାଲିୟରର ମହାରାଜା ଜୀ ବାଜୀରାଓ ନିର୍ମ୍ମାଣ କରାଇ ତହିଁରେ ଶ୍ରୀରାଧା-ଗୋପାଳ, ନୃତ୍ୟଗୋପାଳ, ଓ ହଂସଗୋପାଳଙ୍କର ଶ୍ରୀବିଗ୍ରହତ୍ରୟ ପ୍ରତିଷ୍ଠା କରାଇଥିଲେ । ସେବାପୂଜା ସୁଚାରୁରୂପେ ନିର୍ବାହ ହେଉଅଛି ।

ଟିକାରୀର ମହାରାଣୀ ଏକ ମନ୍ଦିର ନିର୍ମ୍ମାଣ କରାଇ ତହିଁରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ବିଗ୍ରହଦ୍ୱୟ ପ୍ରତିଷ୍ଠା କରିଅଛନ୍ତି । ମନ୍ଦିରର ଚୂଡ଼ା, ଧ୍ୱଜ ଓ କଳଶ ସୁବର୍ଣ୍ଣ ପତ୍ରଦ୍ୱାରା ଆବୃତ ହୋଇ ପରମ ଶୋଭା ଧାରଣ କରିଅଛି ।

## ଶ୍ରୀ ବଙ୍କଚହ୍ୱାସ୍ତ ।

ଶ୍ରୀଗୋପୀଶ୍ୱର ମହାଦେବ ବୃନ୍ଦାବନର ଅଧିଷ୍ଠାତ୍ରୀ ଦେବତା । ପରମବୈଷ୍ଣବ ଓ ଭକ୍ତାଗ୍ରଣୀ ଶ୍ରୀମହାଦେବ ଗୋପୀବେଶଧାରଣକରି ପ୍ରଚ୍ଛନ୍ନ ଭାବରେ ଗୋପାଙ୍ଗନାମାନଙ୍କସହିତ ଶ୍ରୀକୃଷ୍ଣଙ୍କ ରାସଲୀଳା ଦର୍ଶନ କରୁଥିଲେ । ଶ୍ରୀକୃଷ୍ଣ ତାହାଙ୍କୁ ଗୋପୀବେଶଧାରୀ ଦେଖି ତାହାଙ୍କର ନାମ ଗୋପୀଶ୍ୱର ରଖିଲେ । ତଦବଧି ଶ୍ରୀବୃନ୍ଦାବନରେ ଗୋପୀଶ୍ୱର ଆଦିଲିଙ୍ଗ ସ୍ୱରୂପ ପୂଜା ପାଉଅଛନ୍ତି ।

ଭାତରୋଳ ବା ଭାତରୋଡ଼ ମଥୁରାରୁ ବୃନ୍ଦାବନକୁ ଯିବା ରାସ୍ତାର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ । ଏଠାରୁ ବୃନ୍ଦାବନ ସହର ପ୍ରାୟ ତିନିମାଇଲ ଦୂର ହେବ । ବୃନ୍ଦାବନବାସୀ ବ୍ରାହ୍ମଣଗଣ ଯଜ୍ଞରେ ଦୀକ୍ଷିତ ହୋଇ ଏଠାରେ ଯଜ୍ଞ କରୁଥିଲେ । ଗୋଚାରଣ ସମୟରେ ଗୋପବାଳକମାନେ କ୍ଷୁଧାତୁର ହୋଇ ଖାଦ୍ୟ ସକାଶେ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିବାରୁ ଯାଜ୍ଞିକ ବ୍ରାହ୍ମଣମାନଙ୍କ ନିକଟରୁ ଅନ୍ନ ସଂଗ୍ରହ କରିବାକୁ ଶ୍ରୀକୃଷ୍ଣ ଆଦେଶ ଦେଲେ । ତଦନୁସାରେ ଗୋପବାଳକମାନେ ଯାଜ୍ଞିକ ବ୍ରାହ୍ମଣମାନଙ୍କ ନିକଟରେ ଉପସ୍ଥିତ ହୋଇ ଶ୍ରୀକୃଷ୍ଣ ଓ ବଳରାମଙ୍କର ନାମୋଚ୍ଚାରଣ କରି ଅନ୍ନପ୍ରାର୍ଥୀ ହେବାରୁ ଯଜ୍ଞେଶ୍ୱର ଶ୍ରୀକୃଷ୍ଣଙ୍କ ମହିମାନଭିଜ୍ଞ ବହ୍ନାଶଙ୍କୀ ବ୍ରାହ୍ମଣମାନେ ଅଭିମାନବଶତଃ ଗୋପବାଳକମାନଙ୍କୁ ଭର୍ତ୍ସନା କରି ବିଦାୟ ଦେଲେ । ଗୋପବାଳକମାନେ ପ୍ରତ୍ୟାଗମନ କରି ସମସ୍ତ ଘଟଣା ଶ୍ରୀକୃଷ୍ଣଙ୍କ ନିକଟରେ ନିବେଦନ କରନ୍ତେ ଶ୍ରୀକୃଷ୍ଣ ପୁନଶ୍ଚ ସେମାନଙ୍କୁ ଅନ୍ନାର୍ଥେ ଯାଜ୍ଞିକପତ୍ନୀମାନଙ୍କ ନିକଟକୁ ପ୍ରେରଣ କଲେ । ବ୍ରାହ୍ମଣପତ୍ନୀମାନେ ଶ୍ରୀକୃଷ୍ଣଙ୍କର ଅନ୍ନ ଯାଚଞ୍ଚାରେ ଆପ୍ୟାୟିତ ହୋଇ ପରମୋଲ୍ଲାସ ସହିତ ଅନ୍ନ ଓ ବ୍ୟଞ୍ଜନାଦି ନେଇ ଗୋଷ୍ଠବାସୀ ଶ୍ରୀକୃଷ୍ଣଙ୍କୁ ଅର୍ପଣ କଲେ । ଗୋପବାଳକମାନେ ଭୋଜନ ଦ୍ୱାରା ଓ ଯାଜ୍ଞିକପତ୍ନୀମାନେ ହାସ୍ୟଙ୍କ ଦର୍ଶନରେ କୃତାର୍ଥ ହୋଇଥିଲେ । ତଦବଧି ଉକ୍ତ ସ୍ଥାନ ଭାତ-ରୋଳ ଆଖ୍ୟା ଲାଭ କରିଅଛି ଓ ଏଠାରେ ଏକ ମନ୍ଦିର ନିର୍ମିତ ହୋଇଅଛି ।

ଅଟଳବନ ଭୂତେଶ୍ୱରର ଅନତିଦୂରରେ ଅବସ୍ଥିତ । ଏହା ଶ୍ରୀକୃଷ୍ଣଙ୍କର ଗୋଚାରଣ ସ୍ଥାନ ଅଟେ ।

ଦାବାନଳକୁଣ୍ଡ ଅଟଳବନର କିଞ୍ଚିତ୍‌ଦୂରରେ ଅବସ୍ଥିତ । ଶ୍ରୀକୃଷ୍ଣ ଗୋପବାଳକମାନଙ୍କ ସହିତ ମୁଞ୍ଜାଟବୀରେ ଗୋଚାରଣ ଲୀଳା କରିବା ସମୟରେ ହଠାତ୍ ଦାବାଗ୍ନି ଚତୁର୍ଦ୍ଦିଗବ୍ୟାପୀ ଅଗ୍ରସର ହେବାରୁ ଗୋପବାଳକମାନେ ଆର୍ତ୍ତ ହୋଇ ଶ୍ରୀକୃଷ୍ଣଙ୍କର ଶରଣାପନ୍ନ ହେଲେ । ତାହାଙ୍କ ଆଦେଶାନୁସାରେ ସମସ୍ତେ ନିଜ ନିଜ ହସ୍ତଦ୍ୱାରା ସ୍ୱଚକ୍ଷୁ ବନ୍ଦ କରନ୍ତେ ଶ୍ରୀଭଗବାନ୍ ସ୍ୱଶକ୍ତିବଳରେ ବନାଗ୍ନି ପାନ କରି ସମସ୍ତଙ୍କୁ ରକ୍ଷା କରିଥିଲେ । ଏହି ଘଟଣା ସ୍ମରଣାର୍ଥେ ଏକ କୁଣ୍ଡ ନିର୍ମାଣ ହୋଇଅଛି । ତାହାକୁ ଦାବାନଳ କୁଣ୍ଡ କହନ୍ତି ।

ବୃନ୍ଦାବନରୁ ମଥୁରାକୁ ଯିବାରାସ୍ତାର ବାମପାର୍ଶ୍ୱରେ ସହରଠାରୁ ପ୍ରାୟ ଏକମାଇଲ ଦୂରରେ ଏକ ଅସମ୍ପୂର୍ଣ୍ଣ ବୃହତ୍ ଶୂନ୍ୟମନ୍ଦିର ଦୃଷ୍ଟି-ଗୋଚର ହୁଏ । ମନ୍ଦିରର ଗାତ୍ର ନାନାଦି ଶିଳ୍ପ କଳାରେ ବିମଣ୍ଡିତ ହୋଇଅଛି । ସମ୍ପୂର୍ଣ୍ଣ ହୋଇଥିଲେ ଏହା ବୃନ୍ଦାବନର ମନ୍ଦିରମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଥାଆନ୍ତା । ଜୟପୁରାଧୀଶ୍ୱର ମାଧୋସିଂହ ଏକକୋଟି ମୁଦ୍ରାବ୍ୟୟରେ ଏହି ମନ୍ଦିର ନିର୍ମାଣ କରାଉଥିଲେ । "ମନ୍ଦିର ସମ୍ପୂର୍ଣ୍ଣ ହେବାମାତ୍ରେ ମହାରାଜା କାଳକବଳରେ ପତିତ ହେବେ ।" ଏହିରୂପ ବାକ୍ୟ ଗଣକମାନଙ୍କ ମୁଖରୁ ଶୁଣି କୁସଂସ୍କାରବଶତଃ ରାଜା କାର୍ଯ୍ୟବନ୍ଦ କରାଇଲେ । ମନ୍ଦିର ମଧ୍ୟଭାଗ ଶ୍ୱେତ ଓ କୃଷ୍ଣବର୍ଣ୍ଣ ମର୍ମର ପ୍ରସ୍ତର ଦ୍ୱାରା ଆଚ୍ଛାଦିତ ହୋଇ ତହିଁ ଉପରେ ଅତିସୂକ୍ଷ୍ମ କାରୁକାର୍ଯ୍ୟ ଖୋଦିତ ହୋଇଅଛି । ଗର୍ଭଗୃହର ଦ୍ୱାର ସୁବର୍ଣ୍ଣ ଓ ରଜତଦ୍ୱାରା ଖଚିତ ହୋଇଅଛି ।

ନିଧୁବନ ବର୍ତ୍ତମାନ ବୃନ୍ଦାବନ ସହରମଧ୍ୟରେ ଅବସ୍ଥିତ । ଚତୁର୍ଦ୍ଦିଗ ପ୍ରାଚୀରଦ୍ୱାରା ପରିବେଷ୍ଟିତ । ଶ୍ରୀକୃଷ୍ଣଙ୍କର ବିହାର ସମ୍ମୁଖରେ

ଏହା ଘୋରବଂନାକଣ୍ଠି ଥିଲା । ଏଠାରେ ଶ୍ରୀରାଧା ବୃନ୍ଦାବନେଶ୍ୱରୀ (ରାଇରାଜା) ସ୍ୱରୂପ ଅଭିଷିକ୍ତା ହୋଇଥିଲେ । ଅଷ୍ଟ ନର୍ମସଖୀ ତାହାଙ୍କର ପାରିଷଦ ପଦରେ ଶୋଭା ପାଉଥିଲେ । ଶ୍ରୀକୃଷ୍ଣ ଦ୍ୱାରପାଳ ହୋଇଥିଲେ । ଏଠାରେ ବିଶାଖାକୁଣ୍ଡ ଅଛି । ହରିଦାସ ଠାକୁର ବିଶାଖାକୁଣ୍ଡ ନିକଟରେ ବାସ ଓ ଭଜନ ସ୍ମରଣ କରୁଥିବା ସମୟରେ ସ୍ୱପ୍ନାଦେଶମତେ କୁଣ୍ଡମଧ୍ୟରୁ ଶ୍ରୀବଙ୍କବିହାରୀଙ୍କୁ ଉଦ୍ଧାର କରି ପ୍ରତିଷ୍ଠା କରାଇଥିଲେ ।

ନିକୁଞ୍ଜବନ ସହରମଧ୍ୟରେ ଅବସ୍ଥିତ । ଚତୁର୍ଦ୍ଦିଗ ପ୍ରାଚୀରଦ୍ୱାରା ପରିବେଷ୍ଟିତ । ପ୍ରବେଶ ଦ୍ୱାରର କିୟତ୍‌ଦୂରରେ ଶ୍ୟାମଳ ପତ୍ରାବଳି-ବିମଣ୍ଡିତ ଏକ ପୁରାତନ ତମାଳବୃକ୍ଷ ଦୃଷ୍ଟିଗୋଚର ହୁଏ । ବୃକ୍ଷର ସ୍କନ୍ଧରେ (ଗଣ୍ଠି) ଶାଳଗ୍ରାମ ଶିଳାସଦୃଶ ଗଣ୍ଠିସମୂହ ବିଦ୍ୟମାନ । ବାଲ୍ୟାବସ୍ଥାରେ ଶ୍ରୀକୃଷ୍ଣ ନବନୀତ ଭକ୍ଷଣ କରି ଏହି ବୃକ୍ଷ ସ୍କନ୍ଧରେ ହସ୍ତ ପରିମାର୍ଜିତ କରିଥିବାରୁ ସେହି ସ୍ଥାନ ସମସ୍ତ ଶାଳଗ୍ରାମ ଶିଳାକାର ଧାରଣ କରିଅଛି । ନିକୁଞ୍ଜବନ ମଧ୍ୟସ୍ଥିତ ଏକ କ୍ଷୁଦ୍ର ମନ୍ଦିରରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ମାନଭଞ୍ଜନ କରୁଥିବାର ପ୍ରତିଲିପି ଅଛି । ବୈଷ୍ଣବ ସେବକବୃନ୍ଦ ପ୍ରତ୍ୟହ ସନ୍ଧ୍ୟାବେଳେ ମନ୍ଦିରମଧ୍ୟରେ ପୁଷ୍ପଶଯ୍ୟା ଓ ତାହା ନିକଟରେ ପ୍ରଦୀପ ସ୍ଥାପନ କରି ଦ୍ୱାରରୁଦ୍ଧ କରନ୍ତି । ରାତିରେ ବନମଧ୍ୟରେ କେହି ରହନ୍ତିନାହିଁ । ପରଦିବସ ମନ୍ଦିରଦ୍ୱାର ଉନ୍ମୁକ୍ତ ହେଲେ ପୁଷ୍ପଶଯ୍ୟା ଇତସ୍ତତଃ ବିକ୍ଷିପ୍ତ ହୋଇଥିବାର ଦେଖାଯାଏ । ଶ୍ରୀ ରାଧାକୃଷ୍ଣଙ୍କର ରାତି-କାଳୀନ କ୍ରୀଡ଼ା ହେତୁ ଏହିରୂପ ଘଟଣା ହୁଏ ।

ଚୀରଘାଟ—ସାହାଜି ମନ୍ଦିରନିକଟବର୍ତ୍ତୀ ଯମୁନାକୂଳସ୍ଥିତ ଏକ କେଳିକଦମ୍ବ ବୃକ୍ଷଶାଖାରେ ପଣ୍ଡାମାନେ କ୍ଷୁଦ୍ର କ୍ଷୁଦ୍ର ବସନ୍ତ ଓ ରକ୍ତବର୍ଣ୍ଣ ବସ୍ତ୍ରଖଣ୍ଡ ଝୁଲାଇ ଉକ୍ତସ୍ଥାନ ଚୀରଘାଟ ଥିବାର ପ୍ରକାଶକରନ୍ତି । ଯାତ୍ରୀମାନଙ୍କୁ ପ୍ରତାରଣା କରି ଦକ୍ଷିଣା ନେବା ଉଦ୍ଦେଶ୍ୟରେ ଏହାର ସୃଷ୍ଟି । ଶ୍ରୀ ମଦନମୋହନ ଦେବଙ୍କର ପୁରାତନ ମନ୍ଦିର ନିକଟସ୍ଥ ଯମୁନାଜୀଙ୍କର

ଅପର ପାରରେ ପ୍ରକୃତରେ ଚୀରଘାଟ ଅଛି । ବୈଷ୍ଣବମାନେ ବନ ପରିକ୍ରମା ସମୟରେ ଏହି ଘାଟ ପରିକ୍ରମା କରନ୍ତି ।

କେଶିଘାଟ—ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ସ୍ଥାନରେ ହୟାକୃତ କେଶି-ଦୈତ୍ୟକୁ ବିନାଶ କରିଥିଲେ ତାହା କେଶିଘାଟ ନାମରେ ଅଭିହିତ ।

କାଳୀହ୍ରଦମଧ୍ୟ ଘାଟ—ଗରୁଡ଼ଙ୍କ ଭୟରେ କାଳୀୟ ସର୍ପ ସପରିବାର ସହିତ ହ୍ରଦରେ ବାସ କରୁଥିବାରୁ ହ୍ରଦଜଳ ବିଷାକ୍ତ ହୋଇଁ ପାନର ଅଯୋଗ୍ୟ ହୋଇଥିଲା । ତୀରସ୍ଥିତ ଏକମାତ୍ର କଦମ୍ବବୃକ୍ଷ ବ୍ୟତୀତ ଅନ୍ୟାନ୍ୟ ବୃକ୍ଷ ସମସ୍ତ ବିଷଜ୍ୱାଳାରେ ବିନଷ୍ଟ ହୋଇଥିଲେ । ଗରୁଡ଼ ବଳପୂର୍ବକ ସ୍ୱର୍ଗରୁ ଅମୃତଭାଣ୍ଡ ଆହରଣ କରି ଭାଣ୍ଡସହିତ ଏହି କଦମ୍ବ-ବୃକ୍ଷ ଶାଖାରେ ଉପବେଶନ କରିଥିବାରୁ ଅମୃତସ୍ପର୍ଶହେତୁ ଉକ୍ତବୃକ୍ଷ ଅକ୍ଷୁଣ୍ଣ ଭାବରେ ରହିଥିଲା । ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ାରତ ଗୋପବାଳକବୃନ୍ଦ ତୃଷାର୍ତ୍ତ ହୋଇ ଅଜ୍ଞାନବଶତଃ ହ୍ରଦଜଳ ପାନକରି ପ୍ରାଣତ୍ୟାଗ କଲେ । ଶ୍ରୀକୃଷ୍ଣ ତଦ୍‌ଦର୍ଶନରେ ଦୁଃଖିତ ହୋଇ ଅମୃତବର୍ଷୀ ଦୃଷ୍ଟିପାତ-ଦ୍ୱାରା ସେମାନଙ୍କୁ ପ୍ରାଣଦାନ କରିଥିଲେ ଓ ହ୍ରଦଜଳ ଦୋଷଶୂନ୍ୟ କରିବା ଉଦ୍ଦେଶ୍ୟରେ କଦମ୍ବବୃକ୍ଷାରୋହଣପୂର୍ବକ ହ୍ରଦମଧ୍ୟକୁ ଲମ୍ଫ ପ୍ରଦାନ କରିବାରୁ ହ୍ରଦଜଳ ଆଲୋଡ଼ିତ ହୋଇଥିଲା । ତଦ୍ଦ୍ୱାରା କାଳୀୟ ବିଚଳିତ ଓ କ୍ରୋଧାନ୍ୱିତ ହୋଇ ଶ୍ରୀକୃଷ୍ଣଙ୍କୁ ଦଂଶନ ଓ ସର୍ବାଙ୍ଗ ସ୍ୱଦେହଦ୍ୱାରା ବେଷ୍ଟନ କଲା, ମାତ୍ର ଶ୍ରୀକୃଷ୍ଣଙ୍କର କୌଣସି ଅନିଷ୍ଟ କରି-ପାରିଲାନାହିଁ । ଶ୍ରୀକୃଷ୍ଣ ନଗ୍ନପଦରେ କାଳୀୟର ଫଣାରେ ନୃତ୍ୟକରି ତାହାର ଦର୍ପ ନାଶ କଲେ । ତଦନନ୍ତର ନାଗପତ୍ନୀମାନଙ୍କର ସ୍ତୁତିବାକ୍ୟ-ଦ୍ୱାରା ପରିତୁଷ୍ଟ ହୋଇ ସର୍ପର ପ୍ରାଣରକ୍ଷା କଲେ ଓ ରମଣକ ଦ୍ୱୀପକୁ ଯାଇ ସେଠାରେ ନିର୍ଭୟରେ ପରିବାର ସହିତ ବାସ କରିବା ସକାଶେ ଆଦେଶ ଦେଲେ । ଶ୍ରୀକୃଷ୍ଣଙ୍କର ପଦଚିହ୍ନଦ୍ୱାରା ଫଣା ଅଙ୍କିତ ହୋଇ-ଥିବାରୁ ଗରୁଡ଼ ତାହାର କୌଣସି ଅନିଷ୍ଟ କଲେ ନାହିଁ । ଶ୍ରୀକୃଷ୍ଣଙ୍କ

ଉପର ପାରରେ ପ୍ରକୃତରେ ଚୀରଘାଟ ଅଛି । ବୈଷ୍ଣବମାନେ ବନ ପରିକ୍ରମା ସମୟରେ ଏହି ଘାଟ ପରିକ୍ରମା କରନ୍ତି ।

କେଶିଘାଟ—ଭଗବାନ୍ ଶ୍ରୀକୃଷ୍ଣ ଯେଉଁ ସ୍ଥାନରେ ଅଶ୍ୱାକୃତ କେଶି-ଦୈତ୍ୟକୁ ବିନାଶ କରିଥିଲେ ତାହା କେଶିଘାଟ ନାମରେ ଅଭିହିତ ।

କାଳୀୟଦମନ ଘାଟ—ଗରୁଡ଼ଙ୍କ ଭୟରେ କାଳୀୟ ସର୍ପ ସପରିବାର ସହିତ ହ୍ରଦରେ ବାସ କରୁଥିବାରୁ ହ୍ରଦଜଳ ବିଷାକ୍ତ ହୋଇ ପାନର ଅଯୋଗ୍ୟ ହୋଇଥିଲା । ତଟସ୍ଥିତ ଏକମାତ୍ର କଦମ୍ବବୃକ୍ଷ ବ୍ୟତୀତ ଅନ୍ୟାନ୍ୟ ବୃକ୍ଷ ସମସ୍ତ ବିଷଜ୍ୱାଳାରେ ବିନଷ୍ଟ ହୋଇଥିଲେ । ଗରୁଡ଼ ବଳପୂର୍ବକ ସ୍ୱର୍ଗରୁ ଅମୃତଭାଣ୍ଡ ଆହରଣ କରି ଭାଣ୍ଡ ସହିତ ଏହି କଦମ୍ବ-ବୃକ୍ଷ ଶାଖାରେ ଉପବେଶନ କରିଥିବାରୁ ଅମୃତସ୍ପର୍ଶହେତୁ ଉକ୍ତ ବୃକ୍ଷ ଅକ୍ଷୁଣ୍ଣ ଭାବରେ ରହିଥିଲା । ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ାରତ ଗୋପବାଳକବୃନ୍ଦ ତୃଷାର୍ତ୍ତ ହୋଇ ଅଜ୍ଞାନବଶତଃ ହ୍ରଦଜଳ ପାନକରି ପ୍ରାଣତ୍ୟାଗ କଲେ । ଶ୍ରୀକୃଷ୍ଣ ତଦ୍ଦର୍ଶନରେ ଦୁଃଖିତ ହୋଇ ଅମୃତବର୍ଷୀ ଦୃଷ୍ଟିପାତ-ଦ୍ୱାରା ସେମାନଙ୍କୁ ପ୍ରାଣଦାନ କରିଥିଲେ ଓ ହ୍ରଦଜଳ ବିଷଶୂନ୍ୟ କରିବା ଉଦ୍ଦେଶ୍ୟରେ କଦମ୍ବବୃକ୍ଷାରୋହଣପୂର୍ବକ ହ୍ରଦମଧ୍ୟକୁ ଲମ୍ଫ ପ୍ରଦାନ କରିବାରୁ ହ୍ରଦଜଳ ଆଲୋଡ଼ିତ ହୋଇଥିଲା । ତଦ୍ଦ୍ୱାରା କାଳୀୟ ବିଚଳିତ ଓ କ୍ରୋଧାନ୍ୱିତ ହୋଇ ଶ୍ରୀକୃଷ୍ଣଙ୍କୁ ଦଂଶନ ଓ ସର୍ବାଙ୍ଗ ସ୍ୱଦେହଦ୍ୱାରା ବେଷ୍ଟନ କଲା, ମାତ୍ର ଶ୍ରୀକୃଷ୍ଣଙ୍କର କୌଣସି ଅନିଷ୍ଟ କରି-ପାରିଲାନାହିଁ । ଶ୍ରୀକୃଷ୍ଣ ନଗ୍ନପଦରେ କାଳୀୟର ଫଣାରେ ନୃତ୍ୟକରି ତାହାର ଦର୍ପ ନାଶ କଲେ । ତଦନନ୍ତର ନାଗପତ୍ନୀମାନଙ୍କର ସ୍ତୁତିବାକ୍ୟ-ଦ୍ୱାରା ପରିତୁଷ୍ଟ ହୋଇ ସର୍ପର ପ୍ରାଣରକ୍ଷା କଲେ ଓ ରମଣକ ଦ୍ୱୀପକୁ ଯାଇ ସେଠାରେ ନିର୍ଭୟରେ ପରିବାର ସହିତ ବାସ କରିବା ସକାଶେ ଆଦେଶ ଦେଲେ । ଶ୍ରୀକୃଷ୍ଣଙ୍କର ପଦଚିହ୍ନଦ୍ୱାରା ଫଣା ଅଙ୍କିତ ହୋଇ-ଥିବାରୁ ଗରୁଡ଼ ତାହାର କୌଣସି ଅନିଷ୍ଟ କଲେ ନାହିଁ । ଶ୍ରୀକୃଷ୍ଣଙ୍କ

ଅଙ୍ଗସ୍ପର୍ଶରୁ ହ୍ରଦଜଳ ବିଷଶୂନ୍ୟ ହେଲା । ବର୍ତ୍ତମାନ ଏଠାରେ କାଳିୟ-ନାଗମୂର୍ତ୍ତି ଓ ତାହାର ଫଣା-ନର୍ତ୍ତନକାରୀ ଗୋପାଳମୂର୍ତ୍ତି ସ୍ଥାପିତ ହୋଇଅଛନ୍ତି । ଏହି ଘାଟ ଶ୍ରୀ ମଦନମୋହନଙ୍କ ମନ୍ଦିରର କିଛିଦୂରରେ ଅବସ୍ଥିତ ।

ଯମୁନାପୁଳିନ— ଶ୍ରୀକୃଷ୍ଣଙ୍କର ବିହାରସମୟରେ ବୃନ୍ଦାବନସଂଲଗ୍ନ ଯମୁନାଙ୍କର ପ୍ରଶସ୍ତ ଅଂଶ ପୁଳିନ ନାମେ ଅଭିହିତ ହେଉଥିଲା । ବର୍ତ୍ତମାନ ବଂଶୀବଟ ନିକଟବର୍ତ୍ତୀ ଯମୁନାଙ୍କର ସାମାନ୍ୟ ଅଂଶକୁ ପୁଳିନ କହନ୍ତି ।

ରଜଃଚଢ଼ତୀର୍ଥ—ଉପରୋକ୍ତ ପୁଳିନନିକଟରେ ଏକ ଚବୁତରା ଅଛି । ବୈଷ୍ଣବମାନେ ଏହିସ୍ଥାନରୁ ବ୍ରଜଧୂଳି ସଂଗ୍ରହ କରନ୍ତି । ରାସଲୀଳାନ୍ତର ଶ୍ରୀକୃଷ୍ଣ ଗୋପାଙ୍ଗନାମାନଙ୍କୁ ଏଠାରେ ଜ୍ଞାନୋପଦେଶ ଦେଉଥିବାରୁ ଏହାର ଅପର ନାମ ଜ୍ଞାନଗୋଦଡ଼ି ହୋଇଅଛି ।

ରାସଚବୁତରା—ବୃନ୍ଦାବନ ସହରମଧ୍ୟରେ ଅବସ୍ଥିତ । ଗୋପୀମଣ୍ଡଳ-ମଣ୍ଡିତ ଶ୍ରୀକୃଷ୍ଣ କାର୍ତ୍ତିକପୂର୍ଣ୍ଣିମା ରାତ୍ରିରେ ଏହିଠାରେ ରାସୋତ୍ସବ କରିଥିଲେ ।

ବଂଶୀବଟ— ଯମୁନାକୂଳରେ ପ୍ରାଚୀରପରିବେଷ୍ଟିତ ଏକ କୁଞ୍ଜ । ପ୍ରତ୍ୟହ ପୂର୍ବାହ୍ନ ସାତଘଣ୍ଟାଠାରୁ ୧୧ ଘଣ୍ଟା ପର୍ଯ୍ୟନ୍ତ ବ୍ରଜବାଳକମାନେ ଗୋପାଙ୍ଗନା ଓ ଶ୍ରୀକୃଷ୍ଣଙ୍କ ବେଶ ଧାରଣ କରି ରାସଲୀଳାଭିନୟ କରନ୍ତି । ସେମାନେ କାଳୀୟଦମନ ଓ ବସ୍ତ୍ରହରଣାଦି ଘଟଣାମାନଙ୍କୁ ନେଇ ସେହି ସେହି ସ୍ଥାନର ଲୀଳାଭିନୟ କରନ୍ତି । ସ୍ୱଭାବଭକ୍ତ ଶ୍ରୋତାମାନେ ଲୀଳା ମାଧୁର୍ଯ୍ୟ ସମ୍ପୂର୍ଣ୍ଣ-ରୂପେ ଆସ୍ୱାଦନ କରିବାକୁ ଅକ୍ଷମ ହେଲେ ମଧ୍ୟ ନଟବେଶଧାରୀ ବାଳକ-ବୃନ୍ଦଙ୍କର ସ୍ୱରଭଙ୍ଗୀ ଓ ନୃତ୍ୟାଦିଦ୍ୱାରା ମୋହିତ ହୁଅନ୍ତି ।

ବ୍ରହ୍ମକୁଣ୍ଡ—ସହରମଧ୍ୟସ୍ଥିତ ଗୋପୀଶ୍ୱର ମହାଦେବଙ୍କ ମନ୍ଦିରର କିଛିଦୂରରେ ଅବସ୍ଥିତ । ବ୍ରହ୍ମା ବତ୍ସବାଳକ ହରଣାନନ୍ତର ଦିବ୍ୟ-ଜ୍ଞାନ ଲାଭକରି ଶ୍ରୀକୃଷ୍ଣଙ୍କ ମାୟାଜାଲରୁ ମୁକ୍ତ ହୋଇ ପ୍ରେମାଶ୍ରୁବିଗଳିତ

ନସ୍ଥଳରେ ଏହିଠାରେ ଶ୍ରୀକୃଷ୍ଣଙ୍କ ସ୍ତବ କରିଥିଲେ । ତାହାଙ୍କର ନେତ୍ର-ଗଳିତ ଅଶ୍ରୁଜଳ ଏକତ୍ରିତ ହୋଇ କୁଣ୍ଡକୁ ପୂର୍ଣ୍ଣ କରିଥିଲା ।

ଅକ୍ରୁର ଘାଟ—କଂସର ଆଦେଶାନୁସାରେ ଅକ୍ରୁର ବୃନ୍ଦାବନରୁ ଶ୍ରୀକୃଷ୍ଣ ଓ ବଳରାମ ଦୁହିଁଙ୍କୁ ନେଇ ପଥମଧ୍ୟରେ ରଥରୁ ଅବତରଣ କରି ଯମୁନାଜଳରେ ସ୍ନାନ କରିବା ସମୟର ନୀରଗର୍ଭରେ ଶ୍ରୀକୃଷ୍ଣଙ୍କର ଅନନ୍ତଶୟନ ମୂର୍ତ୍ତି ଦର୍ଶନ କରିଥିଲେ । ଅକ୍ରୁରଙ୍କର ସ୍ନାନ ସ୍ଥାନର ନାମ ଅକ୍ରୁରଘାଟ ।

ମଥୁରା ଓ ବୃନ୍ଦାବନ ମଧ୍ୟସ୍ଥିତ ତୀର୍ଥ ଓ ମନ୍ଦିରସମୂହ ଦର୍ଶନ ସକାଶେ ବ୍ରଜବାସିମାନଙ୍କର ସାହାଯ୍ୟ ନିତାନ୍ତ ଦରକାର । ସେମାନଙ୍କର ସାହାଯ୍ୟ ବ୍ୟତୀତ ସ୍ଥାନ ନିର୍ଦ୍ଦେଶ କରିବାକୁ ସୁକଠିନ । ସେହିହେତୁରୁ ଯାତ୍ରିମାନେ ବାଧ୍ୟ ହୋଇ ସେମାନଙ୍କର ଆଶ୍ରୟ ନିଅନ୍ତି । ସହରମଧ୍ୟରେ ବହୁ-ସଂଖ୍ୟକ ବ୍ରଜବାସୀ ଅଛନ୍ତି । ସେମାନଙ୍କୁ ତୀର୍ଥଗୁରୁ କହନ୍ତି । ପ୍ରତ୍ୟେକଙ୍କ ଗୃହରେ ଶ୍ରୀରାଧାକୃଷ୍ଣଙ୍କ ଶ୍ରୀବିଗ୍ରହ ବିରାଜମାନ କରିଅଛନ୍ତି । ବୈଷ୍ଣବ ଭକ୍ତମାନେ କେତେକ ବ୍ରଜବାସୀଙ୍କ ଗୃହରୁ ରୁଟିଭିକ୍ଷା କରି ସେବନ କରନ୍ତି । ମଧୁମକ୍ଷିକା ଭିନ୍ନ ଭିନ୍ନ ବୃକ୍ଷରୁ ମଧୁ ଆହରଣ କରି ଉଦର ପୋଷଣ କରିବାର ନ୍ୟାୟ ବୈଷ୍ଣବମାନେ ଆଚରଣ କରୁଥିବାରୁ ଏହି ପ୍ରଥା ମାଧୁକରୀ ଆଖ୍ୟା ଧାରଣ କରିଅଛି । ତୀର୍ଥଗୁରୁ ବ୍ରଜବାସିଙ୍କ ଆଶ୍ରୟ ବ୍ୟତୀତ ତୀର୍ଥଦର୍ଶନ ଫଳଦାୟକ ନ ହେବାର ବିଶ୍ୱାସ ସର୍ବତ୍ର ପ୍ରଚଳିତ ଅଛି, କିନ୍ତୁ ବର୍ତ୍ତମାନ ଅବସ୍ଥାଦୃଷ୍ଟେ ଏହି ବିଶ୍ୱାସ ମନମଧ୍ୟରୁ ଦୂର କରିବା ଉଚିତ । ବ୍ରଜବାସିମାନେ ଷ୍ଟେସନ ନିକଟରେ କମ୍ବା ରାସ୍ତାମଧ୍ୟରେ କୌଣସି ଏକ ଯାତ୍ରିଙ୍କୁ ଦେଖିବାମାତ୍ରେ ମକ୍ଷିକାର ନ୍ୟାୟ ଚତୁର୍ଦ୍ଦିଗ ବେଷ୍ଟନ କରି ନିତାନ୍ତ ବ୍ୟତିବ୍ୟସ୍ତ କରନ୍ତି । ଏମାନେ ଲୋଭପରବଶ ହୋଇ ଯାତ୍ରିମାନଙ୍କୁ ଛଳନାରେ କରଗତ କରିବାକୁ ସର୍ବଦା ତତ୍ପର । ସେମାନଙ୍କ କବଳରୁ ରକ୍ଷା ପାଇବା ସକାଶେ ସମସ୍ତେ ସାବଧାନ ହେବା ଉଚିତ ।

## ଶ୍ରୀ ବଙ୍କବିହାରୀ ।

ପ୍ରତ୍ୟେକ ଯାତ୍ରିଙ୍କ ପକ୍ଷେ ଶ୍ରୀ ଗୋବିନ୍ଦ, ଗୋପୀନାଥ, ମଦନମୋହନ, ଗୁରୁକୁଳ, ଯମୁନାଦେବୀ ଓ ବୃନ୍ଦାଦେବୀଙ୍କର ପୂଜାକରିବା ନିତାନ୍ତ ଦରକାର । ଶ୍ରୀଠାକୁରଙ୍କୁ ଦର୍ଶନ କରି ଯାହା ପ୍ରଣାମି ଦିଆଯାଏ ତାହାକୁ ଭେଟି କହନ୍ତି । ଉପରୋକ୍ତ ପାଞ୍ଚସ୍ଥାନରେ ସମାନ ପରିମାଣରେ ଭେଟି ଦେବାର ବିଧିଅଛି । ଭେଟିର ପରିମାଣ ଯାତ୍ରିଙ୍କ ଅବସ୍ଥା ଉପରେ ନିର୍ଭର କରେ । ପରିମାଣାନୁସାରେ ଭେଟି ତିନି ଶ୍ରେଣୀରେ ବିଭକ୍ତ । ପ୍ରଥମ ପାଞ୍ଚଟଙ୍କାରୁ ଊର୍ଦ୍ଧ୍ୱ, ଦ୍ୱିତୀୟ ଅଢ଼େଇ ଟଙ୍କାରୁ ଊର୍ଦ୍ଧ୍ୱ ପାଞ୍ଚଟଙ୍କା ପର୍ଯ୍ୟନ୍ତ, ତୃତୀୟ ଅଢ଼େଇ ଟଙ୍କା ପର୍ଯ୍ୟନ୍ତ । ପ୍ରଥମ ଶ୍ରେଣୀ ଭେଟରେ ପ୍ରସାଦ ଓ ଶିରୋପା ମିଳେ । ଦ୍ୱିତୀୟ ଶ୍ରେଣୀ ଭେଟରେ ପ୍ରସାଦ ଓ ରଙ୍ଗିନ ବସ୍ତ୍ରଖଣ୍ଡ ମିଳେ । ତୃତୀୟ ଶ୍ରେଣୀ ଭେଟରେ କେବଳ ପ୍ରସାଦ ମିଳେ । ପ୍ରତ୍ୟେକ ମନ୍ଦିରରେ ସେବାପୂଜା କାର୍ଯ୍ୟ ପରିଚାଳନ ଓ ଭେଟ ପ୍ରସାଦର ମୂଲ୍ୟ ଗ୍ରହଣ କରିବା ନିମନ୍ତେ କର୍ମଚାରୀ ନିଯୁକ୍ତ ଅଛନ୍ତି । ପ୍ରସାଦ ପାଇବାର ଇଚ୍ଛା ହେଲେ ପୂର୍ବଦିବସ ଟଙ୍କା ଜମା ଦେଲେ ପରଦିବସ ମଧ୍ୟାହ୍ନରେ ପ୍ରସାଦ ପାଇବ । ଆମ୍ଭେମାନେ ଶ୍ରୀ ଗୋବିନ୍ଦ ଜିଉଙ୍କର ପ୍ରସାଦ ସେବନ କରି ଆପ୍ୟାୟିତ ହୋଇଥିଲୁଁ । ଯାତ୍ରିମାନଙ୍କର ଦୀକ୍ଷିତ ବୈଷ୍ଣବ ପନ୍ଥାନୁସାରେ ଗୁରୁକୁଳ ଠିକ ହୁଏ ।

ଧନାଢ୍ୟ ବ୍ୟକ୍ତିମାନେ ଯମୁନା ଓ ବୃନ୍ଦାଦେବୀଙ୍କର ଷୋଡ଼ଶୋପଚାରରେ ପୂଜା କରିଥାନ୍ତି । ଏଥିର ସମସ୍ତ ପୂଜୋପକରଣ ଓ ଦକ୍ଷିଣା ନିଯୋଜିତ ବ୍ରଜବାସୀ ପାଇବାର ବିଧି ଅଛି । ମନ୍ଦିରବସ୍ତୁରେ ପ୍ରଦତ୍ତ ଭେଟ ମନ୍ଦିର ତହବିଲରେ ଜମା ହୁଏ । ଉପରୋକ୍ତ ପଞ୍ଚସ୍ଥାନ ବ୍ୟତୀତ ଅନ୍ୟାନ୍ୟ ମନ୍ଦିରମାନଙ୍କରେ ସାମାନ୍ୟ ଭେଟ ଦେବାକୁ ହୁଏ । ଭେଟ ଦେବା ନ ଦେବା ଯାତ୍ରିର ଇଚ୍ଛା ଓ ଅବସ୍ଥା ଉପରେ ନିର୍ଭର କରିବା ଉଚିତ, କିନ୍ତୁ କାଳକ୍ରମେ ଏହା ବାଧ୍ୟତାମୂଳକ ହୋଇଅଛି । ଅଧିକାଂଶ ସ୍ଥଳେ ମନ୍ଦିରସେବକମାନେ ଭେଟ ନପାଇବା ପର୍ଯ୍ୟନ୍ତ ମନ୍ଦିରମଧ୍ୟରେ ପ୍ରବେଶପୂର୍ବକ ଦର୍ଶନ କରିବା ପକ୍ଷରେ ଯାତ୍ରିମାନଙ୍କୁ ବାଧା ଦିଅନ୍ତି ।

---

## ଶ୍ରୀ ବୃନ୍ଦାବନରେ ଅନୁଷ୍ଠିତ ପର୍ବମାନଙ୍କ ମଧ୍ୟରୁ ନିମ୍ନଲିଖିତ ପର୍ବସମୂହ ପ୍ରଧାନ ଅଟେ ।

୧ । ଚନ୍ଦନ ଯାତ୍ରା—ବୈଶାଖ ଶୁକ୍ଳ ତୃତୀୟା ଦିବସରୁ ଆରମ୍ଭ ହୁଏ । ଉକ୍ତ ଦିବସ ଶ୍ରୀ ବଙ୍କବିହାରିଙ୍କର ପାଦପଦ୍ମର ଦର୍ଶନ ମିଳେ ।

୨ । ସ୍ନାନ ଯାତ୍ରା—ଜ୍ୟେଷ୍ଠ ପୂର୍ଣ୍ଣିମା ଦିବସରେ ଶ୍ରୀ ଭଗବାନମାନଙ୍କର ସ୍ନାନୋତ୍ସବ ହୁଏ । ସ୍ନାନପରେ ପୁଷ୍ପକୁଞ୍ଜମଧ୍ୟରେ ଶ୍ରୀ ମୂର୍ତ୍ତିସମୂହ ବିରାଜମାନ କରନ୍ତି ।

୩ । ରଥଯାତ୍ରା—ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିବସ ଆରମ୍ଭ ହୁଏ । ରଥାରୂଢ଼ ଶ୍ରୀ ଭଗବାନସମୂହ ରଜଃ ଚଉତରାରେ ସମବେତ ହୁଅନ୍ତି ।

୪ । ଝୁଲଣଯାତ୍ରା—ଶ୍ରାବଣ ଶୁକ୍ଳ ତୃତୀୟା ଦିବସରୁ ଆରମ୍ଭ ହୁଏ । ପ୍ରତ୍ୟେକ ମନ୍ଦିରରେ ଶ୍ରୀକୃଷ୍ଣ ଝୁଙ୍ଗାର ବେଶରେ ଶ୍ରୀ ରାଧାଙ୍କ ସହିତ ବିରାଜମାନ କରନ୍ତି । ଶେଠମନ୍ଦିର ମଧ୍ୟସ୍ଥିତ ପୁଷ୍କରିଣୀରେ ଶ୍ରୀ ଭଗବାନଙ୍କର ଗଜୋଦ୍ଧାରଣ ବେଶ ହୁଏ ।

୫ । ଜନ୍ମାଷ୍ଟମୀ ଓ ଶ୍ରୀ ରାଧାଷ୍ଟମୀ—ଭାଦ୍ରବ କୃଷ୍ଣ ଅଷ୍ଟମୀ ଦିବସ ଶ୍ରୀ କୃଷ୍ଣଙ୍କର ଓ ଶୁକ୍ଳାଷ୍ଟମୀରେ ଶ୍ରୀ ରାଧାଙ୍କର ଜନ୍ମୋତ୍ସବ ହୁଏ । ଶେଠଙ୍କ ମନ୍ଦିରରେ ମେଳା ହୁଏ ।

୬ । ଶରତ ଯାତ୍ରା—ଆଶ୍ୱିନ ପୂର୍ଣ୍ଣିମା ଦିବସରେ ଅନୁଷ୍ଠିତ ହୁଏ ।

୭ । ଦୀପାବଳୀ ଉତ୍ସବ—କାର୍ତ୍ତିକ ଅମାବାସ୍ୟା ରାତ୍ରରେ ଶ୍ରୀ ଲକ୍ଷ୍ମୀ ଦେବୀଙ୍କର ପୂଜା ହୁଏ ।

୮ । ଗୋବର୍ଦ୍ଧନ ପୂଜା—କାର୍ତ୍ତିକ ଶୁକ୍ଳ ପ୍ରତିପଦା ଦିବସ ଅନ୍ନକୂଟ ହୋଇ ଗିରିଗୋବର୍ଦ୍ଧନଙ୍କର ପୂଜା ହୁଏ ।

୯ । ଗୋପାଷ୍ଟମୀ– କାର୍ତ୍ତିକ ଶୁକ୍ଳ ଅଷ୍ଟମୀଦିନ ବ୍ରଜବାସୀ ବ୍ରାହ୍ମଣ ବାଳକମାନେ ଶ୍ରୀକୃଷ୍ଣ ଓ ଗୋପ ବାଳକ ବେଶ ଧାରଣ କରି ଗୋଚାରଣ ଲୀଳା ଓ ଅଘ, କେଶି, ଧେନୁକ ଏବଂ ବକାଦି ଦୈତ୍ୟବଧ ଲୀଳାର ଅଭିନୟ କରନ୍ତି ।

୧୦ । ରାସଲୀଳା – ମାର୍ଗଶିର ଶୁକ୍ଳପକ୍ଷରେ କେବଳ ଶେଠଙ୍କ ମନ୍ଦିରରେ ରାସଲୀଳାଭିନୟ ହୁଏ ।

୧୧ । ବୈକୁଣ୍ଠୋତ୍ସବ—ପୌଷକୃଷ୍ଣ ଏକାଦଶୀ ଦିବସରୁ ଶୁକ୍ଳ ପଞ୍ଚମୀ ପର୍ଯ୍ୟନ୍ତ କେବଳ ଶେଠଙ୍କ ମନ୍ଦିରରେ ଏହି ଉତ୍ସବ ହୁଏ ।

୧୨ । ବସନ୍ତୋତ୍ସବ—ମାଘ ଶୁକ୍ଳପଞ୍ଚମୀ ଦିବସ ପ୍ରତ୍ୟେକ ମନ୍ଦିରରେ ଶ୍ରୀ ବିଗ୍ରହଙ୍କର ବକୁଳଲାଗି ଉତ୍ସବ ହୁଏ ।

୧୩ । ହୋରିଯାତ୍ରା— ଫାଲଗୁନ ଶୁକ୍ଳଅଷ୍ଟମୀଠାରୁ ପୂର୍ଣ୍ଣିମାପର୍ଯ୍ୟନ୍ତ ପ୍ରତ୍ୟେକ ମନ୍ଦିରରେ ମହାସମାରୋହ ସହିତ ଉତ୍ସବ ହୋଇ ଚୈତ୍ର ପ୍ରତିପଦାରେ ପୂର୍ଣ୍ଣ ହୁଏ ।

୧୪ । ବ୍ରହ୍ମୋତ୍ସବ—ଚୈତ୍ର କୃଷ୍ଣ ଦ୍ୱିତୀୟାଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ କେବଳ ଶେଠଙ୍କ ମନ୍ଦିରରେ ବ୍ରହ୍ମୋତ୍ସବ ହୁଏ ।

ଅକ୍ଟୋବର ମାସ ୨୩ ତାରିଖ ସକାଳ ପାସେଞ୍ଜରରେ ଆମ୍ଭେମାନେ ବୃନ୍ଦାବନରୁ ମଥୁରା ଯାତ୍ରା କଲୁଁ । ଅଳ୍ପସମୟରେ ମଥୁରା ଷ୍ଟେସନକୁ ଆସି ସେଠାରେ ପୂଜାରୀଙ୍କ, ରଖି ସହରମଧ୍ୟକୁ ଯାଇ କେତେକ ତୀର୍ଥସ୍ଥାନ ଦର୍ଶନ କଲୁଁ । ସେଠାରୁ ଫେରି ଅପରାହ୍ଣରେ ମଥୁରାରୁ ଆଗ୍ରା ଯାତ୍ରା କଲୁଁ । ମଥୁରାଠାରୁ ଆଗ୍ରା ସହର ୩୩ ମାଇଲ ଦୂରରେ ଅବସ୍ଥିତ । ତୃତୀୟ ଶ୍ରେଣୀ ରେଲ ଭଡ଼ା ପ୍ରତ୍ୟେକଙ୍କୁ ୫।୵ ପଡ଼ିଲା ।

---

## ଆଗ୍ରା ।

ଆଗ୍ରା ନଗର ଯମୁନାନଦୀ ପଶ୍ଚିମ କୂଳରେ ଅବସ୍ଥିତ । ମୁସଲମାନ ରାଜା ସିକନ୍ଦର ଲୋଦୀ ଏଠାରେ ପ୍ରଥମେ ରାଜଧାନୀ ସ୍ଥାପନ କରିଥିଲେ । ତତ୍ପରେ ଏହା ମୋଗଲ ସମ୍ରାଟ ବାବରଙ୍କର ରାଜଧାନୀ ହେଲା । ବାବରଙ୍କ ପୁତ୍ର ହୁମାୟୁନ୍ ଏଠାରୁ ଦିଲ୍ଲୀକୁ ରାଜଧାନୀ ଉଠାଇନେଲେ । ହୁମାୟୁନ୍‌ଙ୍କ ପୁତ୍ର ଆକବର ବାଦସାହା ୧୫୬୬ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀରୁ ଆଗ୍ରାକୁ ରାଜଧାନୀ ପରିବର୍ତ୍ତନ କଲେ । ତାହାଙ୍କ ନାମାନୁସାରେ ଆଗ୍ରାର ନାମ ଆକବରାବାଦ ହେଲା । ଏହି ସମୟରେ ନଗର ମହାସମୃଦ୍ଧିଶାଳୀ ହୋଇ ଏହାର ଯଶ ଦିକ୍‌ଦିଗନ୍ତର ବ୍ୟାପିଥିଲା । ଲୋହିତ ପ୍ରସ୍ତରପ୍ରାଚୀର-ପରିବେଷ୍ଟିତ ଆଗ୍ରାଦୁର୍ଗ ଆକବରଙ୍କ ଦ୍ୱାରା ୧୫୭୫ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହେଲା । ପ୍ରକୃତ ପକ୍ଷେ ଦୁର୍ଗ ରଥାଶ୍ୱପଦାତସୈନ୍ୟ କେବଳ ନ ଥାଇ ନାନାଶିଳ୍ପକଳାଭମଣ୍ଡିତ ସୌଧାବଳିସମନ୍ୱିତ ସୁବିସ୍ତୃତ ରାଜଭବନ ଅଟେ । ଆକବରଙ୍କ ପୁତ୍ର ଜାହାଙ୍ଗୀର ଓ ପୌତ୍ର ସାଜାହାନ୍‌ଙ୍କ ରାଜତ୍ୱ ସମୟରେ ଦୁର୍ଗମଧ୍ୟରେ ଅନ୍ୟାନ୍ୟ ପ୍ରାସାଦାବଳି ନିର୍ମିତ ହୋଇଥିଲା । ଦୁର୍ଗର ଚତୁର୍ଦ୍ଦିଗ ପରିଖାଦ୍ୱାରା ବେଷ୍ଟିତ । ପରିଖାପାର୍ଶ୍ୱରେ ପ୍ରଥମ ପ୍ରାଚୀର ନିର୍ମିତ ହୋଇଅଛି । ତତ୍ପରେ ଲୋହିତ ପ୍ରସ୍ତରନିର୍ମିତ ଦ୍ୱିତୀୟ ପ୍ରାଚୀର । ଦୁର୍ଗର ଉତ୍ତର ଦିଗରେ ହାତୀପୋଲ ନାମଧେୟ ତୋରଣ ଦ୍ୱାର । ତୋରଣଦ୍ୱାର ଅତିକ୍ରମ କଲେ ଅଳ୍ପ ଦୂରରେ ମତିମସଜିଦ୍ ନୟନଗୋଚର ହେବ । ରକ୍ତପ୍ରସ୍ତରନିର୍ମିତ ଏକ ଉଚ୍ଚ ବେଦୀ ଉପରେ ମସଜିଦ ସ୍ଥାପିତ ହୋଇଅଛି । ମସଜିଦ୍‌ର ସର୍ବାବୟବ ମର୍ମ୍ମର ପ୍ରସ୍ତରଦ୍ୱାରା ନିର୍ମିତ । ବୃହତ୍ ପ୍ରାଙ୍ଗଣ ଶ୍ୱେତ ପ୍ରସ୍ତରଦ୍ୱାରା ଆବୃତ । ପ୍ରାଙ୍ଗଣମଧ୍ୟରେ ପ୍ରସ୍ତର ପାବଚ୍ଛ ପରିବେଷ୍ଟିତ ଏକ ଜଳାଧାର ଅଛି । ଯନ୍ତ୍ର ସାହାଯ୍ୟରେ ତନ୍ମଧ୍ୟସ୍ଥିତ ଜଳ ଉର୍ଦ୍ଧ୍ୱଗାମୀ ହେଉଅଛି । ମସଜିଦ୍ ମଧ୍ୟରେ ଶ୍ୱେତ ମର୍ମ୍ମର-ପ୍ରସ୍ତର ନିର୍ମିତ କେତେକ ଭଜନକକ୍ଷ ଅଛି । ସେ ସମସ୍ତ ପ୍ରସ୍ତର ନିର୍ମିତ ଜାଲିବାଡ଼ଦ୍ୱାରା ପୃଥକ୍ ହୋଇଅଛି । ୧୬୪୬ ଖ୍ରୀଷ୍ଟାବ୍ଦରେ

ସାଜାହାନ ବାଦସାହାଙ୍କ ଦ୍ୱାରା ମସ୍‌ଜିଦ୍‌ର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ତିନିଲକ୍ଷ ଟଙ୍କା ବ୍ୟୟରେ ସାତ ବର୍ଷରେ ପୂର୍ଣ୍ଣ ହୋଇଥିଲା ।

ଦେଓ୍ୟାନ ଆମ୍ ବା ଦରବାରର ଗୃହ ମତିମସ୍‌ଜିଦ୍ ଠାରୁ ଅଳ୍ପଦୂରରେ ଅବସ୍ଥିତ । ଚତୁର୍ଦ୍ଦିଗ ପ୍ରାଚୀରଦ୍ୱାରା ବେଷ୍ଟିତ । ବୃହତ୍ ଅଙ୍ଗଣ ମଧ୍ୟରେ ପ୍ରସ୍ତର ନିର୍ମିତ ଏକ ଉଚ୍ଚ ବେଦୀ ଉପରେ ନାନା କାରୁକାର୍ଯ୍ୟ ବିଭୂଷିତ ସିଂହାସନ ସ୍ଥାପିତ ହୋଇଅଛି । ବାଦସାହା ସିଂହାସନାରୂଢ଼ ହୋଇ ଉଜିରଙ୍କ ମୁଖରୁ ପ୍ରଜାମାନଙ୍କ ଦାଖଲ ଦରଖାସ୍ତସମୂହର ମର୍ମ ଅବଗତ ହୋଇ ଯଥୋଚିତ ଆଦେଶ ଦେଉଥିଲେ ।

ମଣିଭୂଷିତ ସିଂହାସନର ପଶ୍ଚାତ୍ ଭାଗରେ ଅବସ୍ଥିତ । ମଧ୍ୟରେ ଏକ ଜାଲିବାଡ଼ ଅଛି । ଦରବାର ସମୟରେ ବେଗମମାନେ ଜାଲିବାଡ଼ର ଅପର ପାର୍ଶ୍ୱରେ ଉପବେଶନ କରି କ୍ଷୁଦ୍ର ପଥରେ ଦରବାରର ସମସ୍ତ କାର୍ଯ୍ୟ ଦେଖୁଥିଲେ ।

ରଙ୍ଗମହଲ ସିଂହାସନ କକ୍ଷର ଏକପାର୍ଶ୍ୱରେ ଅବସ୍ଥିତ । ଏଥିର ପ୍ରଶସ୍ତ ପ୍ରାଙ୍ଗଣରେ ମର୍ମରପ୍ରସ୍ତରନିର୍ମିତ ଏକ ଜଳାଧାର ଥିଲା । ତହିଁରେ ବାଦସାହାଙ୍କର ବନ୍ଦି ଖେଳ ସକାଶେ ମତ୍ସ୍ୟ ରଖା ହେଉଥିଲେ ।

ରଙ୍ଗମହଲର ଏକପାର୍ଶ୍ୱରେ ଶ୍ୱେତପ୍ରସ୍ତରନିର୍ମିତ ନାଗିନା ମସଜିଦ ବିଦ୍ୟମାନ । ସମ୍ମୁଖରେ ଶ୍ୱେତ ମର୍ମରପ୍ରସ୍ତରବୃତ ଏକ ପ୍ରାଙ୍ଗଣ ଅଛି । ତହିଁମଧ୍ୟରେ ଜଳାଧାର ଅଛି ବେଗମ୍‌ମାନେ ଉପାସନା କରିବା ସକାଶେ ଏହା ନିର୍ମିତ ହୋଇଥିଲା, ଏହାର ଉତ୍ତର ପଶ୍ଚିମ ଭାଗସ୍ଥିତ ଏକ କ୍ଷୁଦ୍ର କକ୍ଷରେ ସାଜାହାନ୍ ବାଦସାହ ତାହାଙ୍କ ପୁତ୍ର ଆରଙ୍ଗଜେବଙ୍କଦ୍ୱାରା କାରାରୁଦ୍ଧ ହୋଇଥିଲେ ।

ହାମାମ୍‌ଖାନ୍ ବା ବାଦସାହାଙ୍କ ସ୍ନାନାଗାର ମଣିଭବନର ପୂର୍ବରେ ଅବସ୍ଥିତ । ଏହାର ଦକ୍ଷିଣଦିଗସ୍ଥ ଏକ ଚତ୍ୱର ଉପରେ ଦୁଇଗୋଟି ସିଂହାସନ ଅଛି । ଉକ୍ତ ସିଂହାସନ ଗୋଟିଏ ପ୍ରସ୍ତରରେ ନିର୍ମିତ ହୋଇ

ମର୍ମରପ୍ରସ୍ତରନିର୍ମିତ ଏକ ବେଦୀ ଉପରେ ସ୍ଥାପିତ ହୋଇଅଛି । ସ୍ୱୟଂ ସିଂହାସନାରୂଢ଼ ହୋଇ ଆକବର ବାଦସାହା ଯମୁନାର ସୁଶୀତଳ ବାୟୁ ସେବନ କରୁଥିଲେ । ନିକଟବର୍ତ୍ତୀ ଶ୍ୱେତ ପ୍ରସ୍ତରନିର୍ମିତ ସିଂହାସନରେ ବୀରବଳ ଉପବିଷ୍ଟ ହୋଇ ରାଜକାର୍ଯ୍ୟ ମନ୍ତ୍ରଣା ଓ ନାନା ବାକ୍ୟାଳାପଦ୍ୱାରା ବାଦସାହାଙ୍କର ଚିତ୍ତବିନୋଦନ କରୁଥିଲେ ।

ଦେଓ୍ୟାନଖାସ୍ ସିଂହାସନ ପ୍ରାଙ୍ଗଣର ଦକ୍ଷିଣ ଦିଗରେ ଅବସ୍ଥିତ । ୧୬୩୭ ଖ୍ରୀଷ୍ଟାବ୍ଦରେ ସାଜାହାନ୍ ବାଦସାହା ଏହାର ନୂତନ ସଂସ୍କାର କରିଥିଲେ । ଅଧୀନସ୍ଥ ରାଜା, ଅମୀର, ନବାବଗଣ ରାଜଦୂତ, ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ବାଦସାହଙ୍କ ସହିତ ଏଠାରେ ସାକ୍ଷାତ୍ କରୁଥିଲେ ଓ ରାଜକାର୍ଯ୍ୟ ଗୁରୁତର ପ୍ରଶ୍ନମାନଙ୍କର ସମାଧା ହେଉଥିଲା ।

ମିନା ମସଜିଦ ଦେଓ୍ୟାନଖାସ୍ ନିକଟରେ ଅବସ୍ଥିତ । ବାଦସାହା ସମୟେ ସମୟେ ଏଠାରେ ଉପାସନା କରୁଥିଲେ ।

ସମାନମହଲ ଓ ଖାସ୍‌ମହଲ ଦେଓ୍ୟାନଖାସର ପଶ୍ଚାତ୍ ଭାଗରେ ଅବସ୍ଥିତ । ସାମାନମହଲ ମର୍ମରପ୍ରସ୍ତରଦ୍ୱାରା ନିର୍ମିତ । ଚତୁର୍ଦ୍ଦିଗ ଶିଳ୍ପକଳାମଣ୍ଡିତ ହୋଇ ଅପୂର୍ବ ଶୋଭା ଧାରଣ କରିଅଛି । ଏହା ପ୍ରିୟତମା ସୌନ୍ଦର୍ଯ୍ୟବତୀ ବେଗମମାନଙ୍କର ବାସଭବନ ଥିଲା । ଏହାର ପୂର୍ବ ତଟରେ ଏକ ବାରଣ୍ଡା ଅଛି । ବାଦସାହା ଏଥିରେ ଉପବେଶନ କରି ବେଗମମାନଙ୍କ ସହିତ ବାକ୍ୟାଳାପ ଓ ଯମୁନାର ସୁଶୀତଳ ବାୟୁ ସେବନ କରୁଥିଲେ ।

ଖାସ୍‌ମହଲ ମଧ୍ୟବର୍ତ୍ତୀ ସ୍ନାନାଗାର ସିସ୍ ମହଲ ବା ଦର୍ପଣପ୍ରାସାଦ ନାମେ ଅଭିହିତ ହେଉଥିଲା । ଉକ୍ତ କକ୍ଷର ଭିତ୍ତି ଓ ଛାତର ନିମ୍ନସ୍ତର କ୍ଷୁଦ୍ର କ୍ଷୁଦ୍ର ଦର୍ପଣସମୂହରେ ବିମଣ୍ଡିତ ହୋଇଥିଲା । କକ୍ଷ ମଧ୍ୟସ୍ଥିତ ଲୋକର ମୂର୍ତ୍ତି ଭିନ୍ନ ଭିନ୍ନ ଦର୍ପଣରେ ପ୍ରତିଫଳିତ ହୋଇ ଶତଶତ ସଂଖ୍ୟକ ମୂର୍ତ୍ତି ଦେଖା-

ଯାଉଥିଲା । ଯମୁନା ନଦୀର ଜଳ କୃତ୍ରିମ ଜଳପ୍ରଣାଳୀ ଦ୍ୱାରା ଆଣିତ ହୋଇ କକ୍ଷ ମଧ୍ୟସ୍ଥିତ ମର୍ମ୍ମରପ୍ରସ୍ତରନିର୍ମ୍ମିତ ଜଳାଧାରକୁ ପୂର୍ଣ୍ଣ କରୁଥିଲା । ସ୍ନାନ ଓ କେଶବିନ୍ୟାସ ସମୟରେ ବେଗମମାନେ ସ୍ୱ ସ୍ୱ ମୂର୍ତ୍ତି ଦେଖିବା ଉଦ୍ଦେଶ୍ୟରେ ଭିତ୍ତି ଓ ଛାତ ଦର୍ପଣଦ୍ୱାରା ଜଡ଼ିତ ହୋଇଥିଲା ।

ଅଙ୍ଗୁରିବାଗ୍ ଉଦ୍ୟାନ ଦର୍ପଣପ୍ରାସାଦର ନିକଟରେ ଅବସ୍ଥିତ । ଦୁଇକୋଟି ରାସ୍ତା ଉଭୟକୁ ଚାରିଥର କର୍ତ୍ତନକରି ଉଦ୍ୟାନକୁ ଷୋଳ ଭାଗରେ ବିଭକ୍ତ କରିଅଛି । ମଧ୍ୟରେ ଏକ ଜଳାଶୟ ଅଛି ।

ଜାହାଙ୍ଗିର ମହଲ ଅଙ୍ଗୁରିବାଗର ଦକ୍ଷିଣରେ ଅବସ୍ଥିତ । ଯୋଧ୍‌ପୁରର ରାଜା ମାଲଦେବଙ୍କ ପୌତ୍ରୀ ଯୋଧାବାୟୀ ଓ ଅମ୍ବରାଧୀଶ୍ୱର ଭଗବାନ୍ ଦାସଙ୍କ କନ୍ୟାଙ୍କୁ ଜାହାଙ୍ଗିର ବିବାହ କରିଥିଲେ । ଉକ୍ତ ମହଲ ଏହି ବେଗମ ଦୁହିଁଙ୍କର ବାସଭବନ ଥିଲା । ଏଥିରେ ହିନ୍ଦୁ ଦେବ ଦେବୀମାନେ ପ୍ରତିଷ୍ଠିତ ହୋଇଥିଲେ । ଯୋଧବାୟୀ ମହଲ ନାନାଶିଳ୍ପ କଳା ଶୋଭିତ ହୋଇ ଅପୂର୍ବ ଶୋଭା ଧାରଣ କରିଥିଲା । ମହଲର ବହିର୍ଭାଗରେ ଏକଖଣ୍ଡ ପ୍ରସ୍ତରନିର୍ମ୍ମିତ ଏକ ବୃହତ୍ କୁଣ୍ଡ ବାଦସାହାଙ୍କ ସ୍ନାନାର୍ଥେ ସ୍ଥାପିତ ହୋଇଥିଲା । ଏହି ମହଲର ଏକ ବାରଣ୍ଡାରେ ବୃହତ୍ କପାଟଦ୍ୱୟ ରଖା ହୋଇଅଛି । ପ୍ରଭାସତୀର୍ଥ ସମୀପସ୍ଥ ସୋମନାଥ ଦେବଙ୍କ ଭଗ୍ନ ମନ୍ଦିରର ଏହା ଚନ୍ଦନକାଷ୍ଠ ନିର୍ମ୍ମିତ କପାଟ ଥିବାର କହନ୍ତି. କିନ୍ତୁ ଉକ୍ତ କପାଟଦ୍ୱୟ ଚନ୍ଦନକାଷ୍ଠଦ୍ୱାରା ନିର୍ମ୍ମିତ ହୋଇଥିବାର ଜଣା ଯାଉନାହିଁ ।

ଦୁର୍ଗମଧ୍ୟରେ ଦର୍ଶନଦରଜା ନାମକ ଏକ ଦ୍ୱାର ଅଛି । ଏହାର ପୂର୍ବଭାଗରେ ଏକ ସୁବିସ୍ତୃତ ପ୍ରାଙ୍ଗଣରେ ସିଂହ, ବ୍ୟାଘ୍ର, ହସ୍ତୀ ପ୍ରଭୃତି ପଶୁମାନଙ୍କର ଯୁଦ୍ଧକ୍ରୀଡ଼ା ହେଉଥିଲା । ଏହାର ନାମ ପଶୁକ୍ରୀଡ଼ା ଭୂମି ।

ମିନାବଜାର ପଶୁକ୍ରୀଡ଼ା ଭୂମିର ଦକ୍ଷିଣରେ ଅବସ୍ଥିତ । ତହିଁ ମଧ୍ୟରେ ରକ୍ତପ୍ରସ୍ତରନିର୍ମ୍ମିତ କେତେକ କକ୍ଷ ଅଛି । ବାଦସାହାମାନଙ୍କ ସମୟରେ

ଏଠାରେ ବଜାର ବସୁଥିଲା । ବେଗମମାନେ ପରିଚାରିକାମାନଙ୍କ ଦ୍ୱାରା ନାନାବିଧ ଦ୍ରବ୍ୟ କ୍ରୟ କରୁଥିଲେ । ବର୍ତ୍ତମାନ ଏହି ସମସ୍ତ କକ୍ଷ ଶୂନ୍ୟଗୃହ ହୋଇଅଛି ।

---

## ତାଜମହଲ ।

ଭୁବନବିଖ୍ୟାତ ତାଜମହଲ ଆଗ୍ରାଷ୍ଟେଶନଠାରୁ ପ୍ରାୟ ଏକକୋଶ ଦୂରରେ ଯମୁନା କୂଳେ ଅବସ୍ଥିତ । ଷ୍ଟେଶନଠାରୁ ଯିବାକୁ ପକ୍କା ରାସ୍ତା ଅଛି । ତାଜମହଲ ପ୍ରବେଶଦ୍ୱାରର ନାମ ତାଜଗଞ୍ଜ ଫାଟକ । ଫାଟକ ସମ୍ମୁଖରେ ଏକ ବୃହତ ପ୍ରାଙ୍ଗଣ । ପ୍ରାଙ୍ଗଣର ଚତୁଃପାର୍ଶ୍ୱରେ ରକ୍ତ ପ୍ରସ୍ତରନିର୍ମିତ କକ୍ଷସମୂହ ବିଦ୍ୟମାନ । ବାଦଶାହାଙ୍କ ସମୟରେ ଏଠାରେ ବଜାର ବସୁଥିଲା । ପ୍ରାଙ୍ଗଣର ଦକ୍ଷିଣଭାଗରେ ସାଜାହାନଙ୍କ ପତ୍ନୀ ମମତାଜ ମହଲଙ୍କ ପ୍ରିୟସଖୀ ସତିଉନ୍ନିସା ଖାନୁମଙ୍କର ସମାଧିମନ୍ଦିର । ଏହାର ଉତ୍ତରଭାଗରେ ତାଜମହଲର ପ୍ରଧାନ ତୋରଣ ଦ୍ୱାର । ଏହାର ଦୀର୍ଘ ୧୫୦ ଫୁଟ ପ୍ରସ୍ଥ ୧୧୫ ଫୁଟ ଓ ଉଚ୍ଚ ୧୦୦ ଫୁଟ ହେବ । ତୋରଣୋପରେ ତ୍ରିତଳ ଗୃହ ଅଛି । ଉପରକୁ ଉଠିବାର ସୋପାନ ଅଛି । ୧୬୪୮ ଖ୍ରୀଷ୍ଟାବ୍ଦରେ ଏହି ତୋରଣ ଦ୍ୱାରର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ତୋରଣଦ୍ୱାରସଂଲଗ୍ନ ଏକ କକ୍ଷରେ ଯମୁନାଗର୍ଭରୁ ପ୍ରାପ୍ତ ଶ୍ରୀକୃଷ୍ଣଙ୍କର ଏକ ମନୋହର ମୂର୍ତ୍ତି ଓ ନାନାସ୍ଥାନରୁ ସଂଗୃହୀତ ପୁରାତନ ଦ୍ରବ୍ୟସମୂହ ରଖା ହୋଇଅଛି ।

ତୋରଣ ଦ୍ୱାରସମ୍ମୁଖରେ ଏକ ମନୋହର ଉଦ୍ୟାନ ଅଛି । ତନ୍ମଧ୍ୟସ୍ଥିତ ଏକ କ୍ଷୁଦ୍ର ଜଳାଶୟରେ ଶ୍ୱେତପଦ୍ମ ପ୍ରସ୍ଫୁଟିତ ହୋଇ ଏହାର ଶୋଭା ବୃଦ୍ଧି କରୁଅଛି ଓ ବିବିଧ ରଙ୍ଗର ମତ୍ସ୍ୟସମୂହ ଜଳମଧ୍ୟରେ କ୍ରୀଡ଼ା କରୁଅଛନ୍ତି ।

ଉଦ୍ୟାନର ଉତ୍ତରଭାଗରେ ଶ୍ୱେତ ପ୍ରସ୍ତରନିର୍ମିତ ଏକ ବୃହତ୍ ଚତ୍ୱର ଅଛି । ଭୂମି ଉପରରୁ ଏହା ପାଞ୍ଚ ଫୁଟ ଉଚ୍ଚ ହେବ । ଦର୍ଶକବୃନ୍ଦ

ଏଠାରେ ଚର୍ମପାଦୁକାମାନ ରଖି ଭିତରେ ପ୍ରବେଶ କରନ୍ତି, କିନ୍ତୁ ପାଶ୍ଚାତ୍ୟ ଦେଶବାସୀ ଦର୍ଶକବୃନ୍ଦ ଏହି ନିୟମ ସର୍ବଦା ପ୍ରତିପାଳନ କରନ୍ତି—ନାହିଁ । ଚତ୍ୱରର ମଧ୍ୟଭାଗରେ ଶ୍ୱେତପ୍ରସ୍ତରନିର୍ମିତ ଏକ ବେଦୀ ଅଛି । ଏହା ଚତ୍ୱରର ତଳରୁ ୧୮ ଫୁଟ ଉଚ୍ଚ ଓ ପ୍ରତ୍ୟେକ ପାର୍ଶ୍ୱ ପ୍ରାୟ ୩୦୦ ଫୁଟ ଲମ୍ବ ହେବ । ଉପରକୁ ଉଠିବାର ସୋପାନ ଅଛି । ଏହି ଉଚ୍ଚବେଦୀର ମଧ୍ୟସ୍ଥଳରେ ସୁପ୍ରସିଦ୍ଧ ତାଜମହଲ ସ୍ଥାପିତ ହୋଇଅଛି । ଏହା ଶ୍ୱେତ ମର୍ମରପ୍ରସ୍ତରଦ୍ୱାରା ଗୁମ୍ବଜାକାରରେ ନିର୍ମିତ ହୋଇଅଛି । ବେଦୀର କୋଣରେ ଚାରିଗୋଟି ଶ୍ୱେତପ୍ରସ୍ତରନିର୍ମିତ ଉଚ୍ଚ ସ୍ତମ୍ଭ ଅଛି । ତାଜମହଲର ଉଚ୍ଚତା ୨୪୩ ଫୁଟ ଓ ସ୍ତମ୍ଭ ଚତୁଷ୍ଟୟର ଉଚ୍ଚତା ୧୬୦ ଫୁଟ ହେବ ।

୧୬୧୨ ଖ୍ରୀଷ୍ଟାବ୍ଦରେ ଜାହାଙ୍ଗିର ବାଦସାହା ସୁନ୍ଦରୀ ନୂରଜାହାନଙ୍କ ଭ୍ରାତୃଷ୍ପୁତ୍ରୀ ଅର୍ଜୁମାନ୍ଦବାନୁ ବେଗମଙ୍କ ସହିତ ନିଜପୁତ୍ର ସୁଲତାନ୍ ଖୁର୍ମଙ୍କୁ ବିବାହ ଦେଇଥିଲେ । ପୁତ୍ରବଧୂଙ୍କ ସଦୃଶ ପତିପ୍ରାଣା, ଧର୍ମପରାୟଣା, ସାଧ୍ୱୀ ରମଣୀ ଜଗତ ମଧ୍ୟରେ କ୍ୱଚିତ ଦେଖାଯାନ୍ତି । ଏହି ଅସାମାନ୍ୟ ରୂପ-ଗୁଣସମ୍ପନ୍ନା ରମଣୀ ଶ୍ୱଶୁରଙ୍କ ପ୍ରଦତ୍ତ ମମତାଜମହଲ ଉପାଧି ଦ୍ୱାରା ବିଭୂଷିତା ହୋଇ ମମତାଜମହଲ ନାମେ ଅଭିହିତା ହେଲେ । ଏହାଙ୍କ ନାମାନୁସାରେ ସମାଧିମନ୍ଦିରର ନାମ ମମତାଜମହଲ ହେଲା । ସୁଲତାନ ଖୁର୍ମ ସାଜାହାନ୍ ନାମ ଧାରଣ କରି ସିଂହାସନାରୂଢ଼ ହୋଇଥିଲେ ।

୧୬୨୯ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟର ଶାସନକର୍ତ୍ତା ସାଜାହାନ ଲୋଦି ରାଜଦ୍ରୋହୀ ହେବାରୁ ତାହାଙ୍କ ଦମନାର୍ଥେ ସାଜାହାନ୍ ବାଦସାହା ସସୈନ୍ୟ ଯାତ୍ରା କଲେ । ପତିପ୍ରାଣା ମମତାଜମହଲ ତାହାଙ୍କ ଅନୁଗାମିନୀ ହେଲେ । ପଥମଧ୍ୟରେ ବରହାନପୁରଠାରେ ମମତାଜ ଏକ କନ୍ୟା ପ୍ରସବ କରି ପ୍ରସୂତ ଅବସ୍ଥାରେ ପ୍ରାଣ ହରାଇଲେ । ସାଜାହାନ୍ ପ୍ରିୟତମାଙ୍କ ବିୟୋଗରେ ମର୍ମାହତ ହୋଇ ରାଜକାର୍ଯ୍ୟ ସମସ୍ତ ତ୍ୟାଗପୂର୍ବକ ଏକ ନିର୍ଜନ କୋଠରୀରେ ବାସ କରି କାଳଯାପନ କଲେ ।

ମମତାଜଙ୍କ ମୃତ ଦେହ ବରହାନପୁରଠାରେ ତାହାଙ୍କ ପ୍ରିୟସଖୀ ସାତ ଉନ୍ନିସାଖାନୁମ୍‌ଙ୍କ ତତ୍ତ୍ୱାବଧାନରେ ଛ ମାସ ପର୍ଯ୍ୟନ୍ତ ରଖାହୋଇ ତତ୍ପରେ ମହାସମାରୋହ ସହିତ ଆଗ୍ରାକୁ ଆଣିତ ହେଲା । ତାଜମହଲର ନିର୍ମାଣ କାର୍ଯ୍ୟ ଶେଷ ହୋଇ ନଥିବାରୁ ପ୍ରଥମେ ମୃତ ଦେହ ତହିଁର ଉତ୍ତର ପଶ୍ଚିମ କୋଣରେ ଖୋଦିତ ଏକ କବର ମଧ୍ୟରେ ରଖା ହେଲା । ତାଜମହଲର ନିର୍ମାଣ କାର୍ଯ୍ୟ ଶେଷ ହୋଇ ମୃତ ଦେହ ତନ୍ମଧ୍ୟରେ ଚିରକାଳ ସକାଶେ ସମାହିତ ହେଲା ।

ତାଜମହଲର ନିର୍ମାଣ କାର୍ଯ୍ୟ ୧୬୩୧ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇ ୧୬୪୮ ଖ୍ରୀଷ୍ଟାବ୍ଦରେ ଶେଷ ହେଲା । ଏଥିରେ ତିନି କୋଟିରୁ କିଛି ଉର୍ଦ୍ଧ୍ୱ ମୁଦ୍ରା ବ୍ୟୟ ହୋଇଥିଲା ଏହାର ସୁବିଶାଳ ତୋରଣ ଦ୍ୱାର ଶ୍ୱେତପ୍ରସ୍ତର ଦ୍ୱାରା ନିର୍ମିତ । ତୋରଣ ଦ୍ୱାର ଅତିକ୍ରମ କରି ମନ୍ଦିରମଧ୍ୟରେ ପ୍ରବେଶ ମାତ୍ରେ ଦର୍ଶକର ସର୍ବେନ୍ଦ୍ରିୟ ମୁଗ୍ଧ ହେବ । ସମାଧି ମନ୍ଦିରର ଚତୁଷ୍ପାର୍ଶ୍ୱ ବିବିଧ ଶିଳ୍ପକଳା ବିମଣ୍ଡିତ ଶ୍ୱେତପ୍ରସ୍ତରନିର୍ମିତ ଭିତ୍ତି ଦ୍ୱାରା ପରିବେଷ୍ଟିତ । ଏହାର ଚୂଡ଼ା ଶ୍ୱେତପ୍ରସ୍ତରନିର୍ମିତ ବିଶାଳ ଗୁମ୍ଵୁଜାକାରରେ ପରିଲକ୍ଷିତ ହୁଏ । ନିମ୍ନଭାଗ ଶ୍ୱେତପ୍ରସ୍ତରଦ୍ୱାରା ଆବୃତ ହୋଇଅଛି । ପ୍ରାସାଦମଧ୍ୟରୁ ଭୂଗର୍ଭ ନିହିତ ମୂଳ କବରଖାନା ଅର୍ଥାତ୍ ପ୍ରକୃତ ସମାଧିକକ୍ଷକୁ ପ୍ରବେଶ କରିବାକୁ ତାବଚ୍ଛ ଅଛି । ଆଲୋକ ସାହାଯ୍ୟରେ ପଥ ଅତିକ୍ରମ କରି ଗର୍ଭ କକ୍ଷରେ ପ୍ରବେଶ କଲେ ସମାଧି ଦୃଷ୍ଟିଗୋଚର ହୁଏ । ମନ୍ଦିର ନାନା ଚାରୁକଳା ବିମଣ୍ଡିତ ହୋଇ ପରମ ଶୋଭା ଧାରଣ କରିଅଛି । ଏହାର ଠିକ ଉପରେ ପ୍ରାସାଦର ସମତଳ ଭୂମି ଉପରେ କୃତ୍ରିମ ସମାଧି ସ୍ଥାପିତ ହୋଇଅଛି । ଉଭୟ ସମାଧି ପାର୍ଶ୍ୱରେ ସାଜାହାନଙ୍କର ସମାଧି ଅଛି । ପ୍ରାସାଦ ଅଷ୍ଟଭୁଜାକାର । ପ୍ରତ୍ୟେକ ଭୁଜ ୨୪ ଫୁଟ ହେବ । ଏହା ଉପରେ ୮୦ ଫୁଟ ଉଚ୍ଚବିଶିଷ୍ଟ ଗୁମ୍ଵଜାକୃତ ଖିଲାଣ । ତହିଁ ଉପରେ ବୃହତ୍ ଗୁମ୍ଵଜ ଅର୍ଥାତ୍ ମନ୍ଦିରର ଚୂଡ଼ା ସ୍ଥାପିତ ହୋଇଅଛି । ପ୍ରାସାଦର ସର୍ବାଙ୍ଗସୁନ୍ଦର ବିବିଧ ଶିଳ୍ପକଳା ସମନ୍ୱିତ ହୋଇ ସ୍ଥାପତ୍ୟ ବିଦ୍ୟାର

ତସ୍ବୀରାଷ୍ଟ୍ରା ଦେଖାଯାଉଅଛି । କୃତ୍ରିମ ସମାଧି ନିକଟରେ ସର୍ବଦା ସୁଗନ୍ଧ ଧୂପ ପ୍ରଦୀପଦାନ ଓ କୋରାନ ପାଠହେଉଅଛି । ପ୍ରାସାଦର ଭିତ୍ତି ଗାତ୍ରରେ କୋରାନର ଗାଥାସମୂହ ଲିଖିତ ହୋଇଅଛି । ପ୍ରାସାଦର ଅଭ୍ୟନ୍ତର ହୀରା, ନୀଳା, ମୋତି, ମାଣିକ୍ୟାଦି ମହାର୍ଘବସ୍ତୁରେ ବିଭୂଷିତ ହୋଇଥିଲା । ପ୍ରବେଶ ଦ୍ୱାରର କପାଟଦ୍ୱୟ ରଜତାବୃତ ହୋଇ ହୀରା ଦ୍ୱାରା ଜଡ଼ିତ ହୋଇଥିଲା । ଯାଠମାନେ ଆଗ୍ରା ନଗର ଆକ୍ରମଣ କରି ହୀରା ଅପହରଣ କଲେ ।

ସାଜାହାନ ବାଦସାହା ଏହି ଅର୍ଜୁମନ୍ଦ ବାନୁ ବେଗମଙ୍କ ସମାଧି ମନ୍ଦିର ନିର୍ମାଣଦ୍ୱାରା ଜଗତ ସମକ୍ଷରେ ଦାମ୍ପତ୍ୟ ପ୍ରଣୟର ଉତ୍କୃଷ୍ଟ ଆଦର୍ଶ ସ୍ଥାପନ କରିଅଛନ୍ତି । ତାଜମହଲ ଯମୁନା କୂଳରେ ଥିବା ପର୍ଯ୍ୟନ୍ତ ଉଭୟଙ୍କର ପ୍ରଣୟଗରିମା ଚିରଦିନ ଘୋଷିତ ହେବ ।

ଆମ୍ଭେମାନେ ଅକ୍ଟୋବର ମାସ ତା ୨୪ ରାତିରେ ଆଗ୍ରାରୁ ପାଟଣାକୁ ଟିକଟ କରି ଟୁଣ୍ଡଲା ଜଙ୍କସନରେ ଉତୁରି କିଛି ସମୟ ପରେ ଅନ୍ୟ ଗାଡ଼ି ଧରି ପରଦିବସ ଭୋର ଆଲ୍ଲାହାବାଦ ଷ୍ଟେସନରେ ଉତୁରିଲୁ । ଆଗ୍ରାରୁ ପାଟଣାକୁ ରେଲଭଡ଼ା ଇଣ୍ଟର ୧୧୫/ ଓ ଥାର୍ଡ ୭୫/ ହିସାବରେ ଦେବାକୁ ହେଲା । ଆଗ୍ରାରୁ ଆଲ୍ଲାହାବାଦ ୨୭ ମାଇଲ ଦୂର । ଷ୍ଟେସନରୁ ସହରମଧ୍ୟକୁ ଯାଇ ଯମୁନାଙ୍କ କୂଳସ୍ଥିତ ଏକ ଧର୍ମଶାଳାରେ ରହିଲୁ ।

---

## ପ୍ରୟାଗ ।

'ଶ୍ରୀବିଷ୍ଣୁ ପାଦନଃସୃତା ଗଙ୍ଗା, ସରସ୍ୱତୀ ଓ ସୂର୍ଯ୍ୟଦେବଙ୍କ ତନୟା ଯମୁନାଙ୍କ ସଙ୍ଗମ ସ୍ଥଳକୁ ପ୍ରୟାଗ କହନ୍ତି । ବର୍ତ୍ତମାନ ସରସ୍ୱତୀ ଅନ୍ତଃସଲିଳା । ବ୍ରହ୍ମାଦି ଦେବବୃନ୍ଦ, ଦିକ୍‌ପାଳ, ଲୋକପାଳ, ସାଧ୍ୟଗଣ, ପିତୃଗଣ, ଚତୁଃସନ,

ନାରଦାଦି ମହର୍ଷିବୃନ୍ଦ, ଅଙ୍ଗିରାଦି ବ୍ରହ୍ମର୍ଷିଗଣ, ନାଗ, ସୁପର୍ଣ୍ଣ, ସିଦ୍ଧ, ଗନ୍ଧର୍ବ, ଅପ୍ସରାମାନେ ପ୍ରଜାପତି ସକଳ ଓ ଭଗବାନ ହରି ସର୍ବଦା ଏହି ତୀର୍ଥରେ ବିରାଜମାନ କରୁଅଛନ୍ତି । ଏଠାରେ ତିନଗୋଟି ଅଗ୍ନିକୁଣ୍ଡ ଅଛି । ତହିଁରେ ଜାହ୍ନବୀଦେବୀ ବିରାଜମାନା । ଗଙ୍ଗା ଓ ଯମୁନାଦେବୀଙ୍କ ମଧ୍ୟସ୍ଥିତ ସ୍ଥାନ ପୃଥିବୀଦେବୀଙ୍କର ଜଘନ ଓ ପ୍ରୟାଗ ଉପସ୍ଥ ଅଟେ । ଏଠାରୁ ପୃଥିବୀଦେବୀଙ୍କରି ପ୍ରଜାନ ସ୍ୱରୂପ ତୀର୍ଥବୃନ୍ଦ ଜାତ ହୋଇଅଛନ୍ତି । ସେହି କାରଣରୁ ପ୍ରୟାଗ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ପ୍ରୟାଗ ନାମୋଚ୍ଚାରଣ ମାତ୍ରେ ଓ ନିକଟକୁ ଗମନ କଲେ ସମସ୍ତ ପ୍ରାଣୀ ସର୍ବପାତକରୁ ମୁକ୍ତ ହୁଅନ୍ତି । ସଙ୍ଗମ ସ୍ଥଳରେ ସ୍ନାନ କଲେ ରାଜସୂୟ ଓ ଅଶ୍ୱମେଧାଦି ଯଜ୍ଞର ଫଳଲାଭ ହୁଏ । ଏଠାରେ ଭୋଗବତୀ ନାମକ ବାସୁକିଙ୍କ ତୀର୍ଥ, ହଂସ ପତନ ତୀର୍ଥ, ଦଶାଶ୍ୱମେଧ ତୀର୍ଥମାନେ ଅଛନ୍ତି ।

କୁରୁକ୍ଷେତ୍ରସମା ଗଙ୍ଗା ଯତ୍ର ତତ୍ରାବଗାହିତା ।
ବିଶେଷୋ ବୈ କନଖଲେ ପ୍ରୟାଗେ ପରମଂ ମହତ୍ । ୮୮ ।
ଯଦ୍ୟକାର୍ଯ୍ୟଶତଂ କୃତ୍ୱା କୃତଂ ଗଙ୍ଗାବସେଚନଂ ।
ସର୍ବଂ ତତ୍ତସ୍ୟ ଗଙ୍ଗାମ୍ଭୋ ଦହତ୍ୟଗ୍ନିରିବେନ୍ଧନଂ । ୮୯ ।
ସର୍ବଂ କୃତଯୁଗେ ପୁଣ୍ୟଂ ତ୍ରେତାୟାଂ ପୁଷ୍କରଂ ସ୍ମୃତଂ ।
ଦ୍ୱାପରେ ତୁ କୁରୁକ୍ଷେତ୍ରଂ ଗଙ୍ଗା କଲିଯୁଗେ ସ୍ମୃତା । ୯୦ ।
ପୁଷ୍କରେ ତୁ କୁରୁକ୍ଷେତ୍ରେ ଗଙ୍ଗାୟାଂ ମଧ୍ୟମେଷୁ ଚ ।
ସ୍ନାତ୍ୱା ତାରୟତେ ଜନ୍ତୁଃ ସପ୍ତସପ୍ତାବରାଂସ୍ତଥା । ୯୧ ।
ମହାଭାରତ, ବନପର୍ବ୍ବ ୮୬ ଅଧ୍ୟାୟ ୬୯ରୁ ୧୦୦ ଶ୍ଳୋକ ଦେଖ ।

ଆଲ୍ଲାହାବାଦ ସହରର ଉତ୍ତରରେ ଗଙ୍ଗା ଓ ପଶ୍ଚିମରେ ଯମୁନା ପ୍ରବାହିତା ହୋଇ ଏକତ୍ର ମିଳିଅଛନ୍ତି । ସଙ୍ଗମ ସନ୍ନିକଟରେ ଏକ ଦୁର୍ଗ ଅଛି । ଯମୁନା କୂଳସଂଲଗ୍ନ ଦୁର୍ଗପ୍ରାଚୀରର ପାଦଦେଶରେ ଏକ କୂପ ଅଛି । ତହିଁ ମଧ୍ୟରେ ସରସ୍ୱତୀ ଆବିର୍ଭୂତା ହୋଇଥିବାର ପଣ୍ଡାମାନେ କହନ୍ତି ।

ପ୍ରକୃତରେ ଯମୁନାଜଳ ଝର କୂପ ପୂର୍ଣ୍ଣ କରୁଅଛୁ । ଗଙ୍ଗା, ଯମୁନା, ସରସ୍ୱତୀ ନଦୀତ୍ରୟଙ୍କର ସଙ୍ଗମସ୍ଥଳ ଥିବାରୁ ବଣ୍ଣାସ ଆବହମାନକାଳରୁ ଚଳିଆସୁଥିବାରୁ ଏହାକୁ ତ୍ରିବେଣୀ କହନ୍ତି ।

ପୂର୍ବକାଳରେ ଶ୍ରୀବିଷ୍ଣୁ ଶଙ୍ଖାସୁରବଧାନନ୍ତର ବେଦଚତୁଷ୍ଟୟ ଉଦ୍ଧାର କରି ବ୍ରହ୍ମାଙ୍କ ହସ୍ତେ ଅର୍ପଣ କରିଥିଲେ । ତତ୍ପରେ ବ୍ରହ୍ମା ଏଠାରେ ଯଜ୍ଞାନୁଷ୍ଠାନ କଲେ ।

ତ୍ରିବେଣୀଘାଟ ଷ୍ଟେଶନଠାରୁ ପ୍ରାୟ ଚାରିମାଇଲ ଦୂର ହେବ । ନୌକାଦ୍ୱାରା ଯମୁନାଙ୍କ ବକ୍ଷ ଦେଇ ଲୋକମାନେ ସଙ୍ଗମସ୍ଥାନକୁ ଗମନ କରନ୍ତି । ସହରରୁ ସ୍ଥଳପଥ ମଧ୍ୟ ଅଛି । ଏହାର ଅପର ନାମ ବେଣୀମାଧବ ଘାଟ ।

ଗଙ୍ଗାଦେବୀଙ୍କର ଶୁକ୍ଳ ଜଳ ଓ ଯମୁନାଙ୍କର କୃଷ୍ଣବର୍ଣ୍ଣ ଜଳସ୍ରୋତ ପ୍ରବଳ ବେଗରେ ପ୍ରବାହିତହୋଇ ଏକତ୍ର ସମ୍ମିଳିତ ହେବାଦୃଶ୍ୟ ଅତି ମନୋହର ଅଟେ । ଘାଟ ଉପରେ ତଡ଼ଧରଙ୍କର ପତାକାସମୂହ ଶ୍ରେଣୀବଦ୍ଧ ହୋଇଅଛି । ପ୍ରତ୍ୟେକ ପତାକା ନିକଟରେ କାଷ୍ଠାସନ ଉପରେ ପଣ୍ଡା ବସିଅଛନ୍ତି । କ୍ଷୌରକାରମାନେ ମସ୍ତକ ମୁଣ୍ଡନକରିବା-ସକାଶେ ତାହା ନିକଟରେ ଅପେକ୍ଷା କରୁଅଛନ୍ତି । ଯାତ୍ରିମାନେ ପଣ୍ଡା-ସାହାଯ୍ୟରେ ପ୍ରଥମେ ଆଚମନ ଓ ସଂକଳ୍ପ କରି ମସ୍ତକ ମୁଣ୍ଡନକରନ୍ତି । ତତ୍ପରେ ନୌକାରୋହଣ କରି ସଙ୍ଗମ ସ୍ଥଳରେ ପହୁଞ୍ଚି ତହିଁରୁ ଅବ-ତରଣ କରି ତାହା ଆଶ୍ରୟରେ ଦଣ୍ଡାୟମାନ ହୋଇ ସ୍ନାନ, ତର୍ପଣ ଓ ପୂଜା କରନ୍ତି । ପଞ୍ଚାମୃତ, ଦୁଗ୍ଧ, ଫଳ ଓ ଦୁର୍ବାଦି ଉପକରଣ ସମୂହ ବିକ୍ରୟାର୍ଥେ ପ୍ରସ୍ତୁତ ଥାଏ । ଯାତ୍ରିମାନେ ତାହା କ୍ରୟ କରି ଦେବୀଙ୍କୁ ସମର୍ପଣ କରନ୍ତି । ପୂଜାନନ୍ତର ନିଯୋଜିତ ପଣ୍ଡାଙ୍କ ନିକଟରେ ଉପସ୍ଥିତ ହୋଇ ପିଣ୍ଡଦାନ କରନ୍ତି । ଶକ୍ତ୍ୟାନୁସାରେ ଉପସ୍ଥିତ ବ୍ରାହ୍ମଣ, ବୈଷ୍ଣବ ଓ ଭିକ୍ଷୁକ-ମାନଙ୍କୁ ଭୋଜନ ଓ ଦକ୍ଷିଣା ଦେବାକୁ ହୁଏ । ତଦନନ୍ତର ଦୁର୍ଗର ଏକାଂଶରେ

ଭୂଗର୍ଭମଧ୍ୟସ୍ଥିତ ଅକ୍ଷୟବଟ ଓ ଦେବତାମାନଙ୍କର ଶ୍ରୀବିଗ୍ରହମାନଙ୍କର ଦର୍ଶନ ହୁଏ । ଶେଷରେ ଯମୁନାଙ୍କର ଅପରତଟରେ ପ୍ରତିଷ୍ଠିତ ବେଣୀମାଧବଙ୍କୁ ଦର୍ଶନ କରି ଯାତ୍ରା ସମାପନ କରାଯାଏ । ବେଣୀମାଧବ ଦ୍ୱିଭୁଜ ମୁରଲୀଧାରୀ ଶ୍ରୀକୃଷ୍ଣ ମୂର୍ତ୍ତି ଅଟନ୍ତି ।

ପ୍ରତ୍ୟେକ ବର୍ଷ ମାଘମାସରେ ମେଳା ହୁଏ । ଦ୍ୱାଦଶବର୍ଷାନ୍ତର ସୂର୍ଯ୍ୟଦେବ କୁମ୍ଭ ରାଶିକୁ ଗମନ କରିବା ସମୟରେ ମାଘ ଓ ଫାଲ୍‌ଗୁନ-ମାସରେ କୁମ୍ଭମେଳା ହୁଏ । ଏହିସମୟରେ ଦୂରଦେଶାଗତ ସନ୍ନ୍ୟାସୀ, ଋଷିମଣ୍ଡଳ, ମଠଧାରୀ ସନ୍ତମହାନ୍ତ ଓ ବହୁସଂଖ୍ୟକ ଯାତ୍ରୀମାନଙ୍କର ସମାଗମ ହୁଏ । ସମବେତ ଲୋକସଂଖ୍ୟା ପ୍ରାୟ ପାଞ୍ଚଲକ୍ଷରୁ ଊର୍ଦ୍ଧ୍ୱ ହେବ ।

ବେଣୀମାଧବଙ୍କ ମନ୍ଦିରନିକଟରୁ ଯମୁନାଙ୍କ ବକ୍ଷ ଉପରେ ନିର୍ମିତ ରେଲ୍‌ଓୟେ ସେତୁ ପର୍ଯ୍ୟନ୍ତ ବିସ୍ତୃତ ରାସ୍ତା ମଧ୍ୟରେ ଭରଦ୍ୱାଜ ମୁନିଙ୍କର ଆଶ୍ରମ ଅଛି । ଭିନ୍ନ ଭିନ୍ନ ସ୍ଥାନରେ ଦେବାଳୟମାନ ଭଗ୍ନାବସ୍ଥାରେ ପଡ଼ିଅଛି । ନିକଟବର୍ତ୍ତୀ ଏକ ଉଚ୍ଚ ଭୂମିରେ ଏକ ଶିବ ମନ୍ଦିର ଏବଂ ନିମ୍ନରେ ପାଙ୍ଗୀ ଓ ମହାଖାସିନ ଦେବ ଦେବୀମାନଙ୍କର ଶ୍ରୀବିଗ୍ରହସମୂହ ଅଛନ୍ତି । ଗଙ୍ଗା-କୂଳରେ ନାଗେଶ୍ୱର ମହାଦେବ, ନାଗରାଜ ବାସୁକି ଓ ଅନ୍ୟ କେତେକ ନାଗ ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛନ୍ତି ।

ପୂର୍ବକାଳରେ ତ୍ରିବେଣୀଘାଟ ନିକଟରେ ଅକ୍ଷୟବଟ ଓ ତତ୍-ସନ୍ନିକଟ ଦେବମନ୍ଦିର ସମସ୍ତ ସ୍ଥାପିତ ହୋଇଥିଲା । ସମ୍ଭବତଃ ନଦୀପ୍ରବାହର ତଡ଼ାପଡ଼ ମନ୍ଦିରାଦି ଭୂଗର୍ଭରେ ଲୀନ ହେଲା । ଦୁର୍ଗନିର୍ମାଣାର୍ଥି ଭୂମି ଖନନ ହେବା ସମୟରେ ଅକ୍ଷୟବଟର ଗଣ୍ଡି ଓ ମନ୍ଦିରାଦି ଦୃଷ୍ଟିଗୋଚର ହେଲା । କାଳକ୍ରମେ ଦୁର୍ଗ ଜୀର୍ଣ୍ଣାବସ୍ଥା ପ୍ରାପ୍ତ ହୋଇଥିଲା । ୧୫୭୫ ଖ୍ରୀଷ୍ଟା-ବ୍ଦରେ ଆକବର ବାଦସାହା ସେହି ସ୍ଥାନରେ ଦୁର୍ଗ ଓ ଆଲ୍ଲାହାବାଦ ସହର ନିର୍ମାଣ କରାଇଲେ । ନଦୀପ୍ରବାହର ବନ୍ୟାରୁ ରକ୍ଷାକରିବା ଉଦ୍ଦେଶ୍ୟରେ ଉଚ୍ଚଭୂମି ପ୍ରସ୍ତୁତ ହୋଇ ତଦୁପରି ଦୁର୍ଗ ନିର୍ମିତ ହୋଇଥିଲା । ସେହି ହେତୁରୁ

ଅକ୍ଷୟବଟ ଓ ତନ୍ନିକଟ ଦେବମନ୍ଦିର ସମସ୍ତ ଭୂଗର୍ଭରେ ଅଛନ୍ତି । ଉର୍ଦ୍ଧ୍ୱରେ ଗୁପ୍ତଦ୍ୱାର ଆବୃତ । ଗୁପ୍ତ ସୁଦୃଢ଼ ସ୍ତମ୍ଭସମୂହକୁ ଅବଲମ୍ବନ କରି ରହିଅଛି । ଗୃହର ପୃଷ୍ଠ-ଦୁର୍ଗର ଉଚ୍ଚଚତ୍ୱର ସହିତ ସମତଳ ହୋଇଅଛି । ଆଲୋକସାହାଯ୍ୟରେ ସୁଡ଼ଙ୍ଗପଥ ଦେଇ କେତେକ ଦୂର ଗଲେ ଅକ୍ଷୟବଟଙ୍କର ଦର୍ଶନ ଲାଭ ହୁଏ । ବର୍ତ୍ତମାନ ଅକ୍ଷୟବଟ ଶାଖା, ଉପଶାଖା ଓ ପତ୍ରାଦି ବର୍ଜିତ ହୋଇ କେବଳ ଗଣ୍ଡିରୂପରେ ବର୍ତ୍ତମାନ ହୋଇ ଅଛନ୍ତି । ଯମୁନାଜଳ ଦୁର୍ଗ ପ୍ରାଚୀର ଭେଦକରି ତାହାଙ୍କୁ ସର୍ବଦା ଅଭିଷିକ୍ତ କରୁଅଛି । ଉକ୍ତ ଜଳପ୍ରଣାଳୀ ସରସ୍ୱତୀଙ୍କର ଧାର ଥିବାର ପଣ୍ଡାମାନେ ପ୍ରକାଶ କରନ୍ତି ।

ଦୁର୍ଗର ସୁବୃହତ୍ ପ୍ରବେଶ ଦ୍ୱାରୋପରି ଏକ ଉଚ୍ଚ ଗୁମ୍ବୁଜ ଅଛି । ଦ୍ୱାର ପାର ହେଲେ ଏକ ବିସ୍ତୃତ ଅଙ୍ଗଣ ଦୃଷ୍ଟିଗୋଚର ହୁଏ, ଅଙ୍ଗଣର ବାମ-ପାର୍ଶ୍ୱରେ ଅକ୍ଷୟବଟ ଓ ଦକ୍ଷିଣ ପାର୍ଶ୍ୱରେ ସେନାନିବାସ ଅଛି । ଲୋକମାନେ ସ୍ୱଇଚ୍ଛାକ୍ରମେ ଅକ୍ଷୟବଟନିକଟକୁ ଯାଉଅଛନ୍ତି ; କିନ୍ତୁ ସେନାନିବାସଦର୍ଶନେଚ୍ଛୁ ଲୋକମାନଙ୍କୁ ପାସ ବା ଅନୁମତି ପତ୍ର ନେବାକୁ ହୁଏ । କଟା ମାଜିଷ୍ଟ୍ରେଟଙ୍କ ନିକଟରେ ଦରଖାସ୍ତ କଲେ ଉଚିତ ଶର୍ତ୍ତର ପରେ ଅନୁମତି ମିଳେ ।

ଦୁର୍ଗର କିଛି ଦୂରରେ ୪୨ ଫୁଟ ଉଚ୍ଚର ଏକ ସ୍ତମ୍ଭ ଅଛି । ଏହା ଅଶୋକଙ୍କ ସମୟରେ ନିର୍ମିତ ହୋଇଥିଲା । ସମୁଦ୍ରଗୁପ୍ତ ଓ ତାହାଙ୍କ ପୂର୍ବାଧିକାରୀମାନଙ୍କର ନାମ ଏବଂ ତଦ୍ବଂଶର ବୃତ୍ତାନ୍ତମାନ ସ୍ତମ୍ଭଗାତ୍ରରେ ଲିପିବଦ୍ଧ ହୋଇଅଛି । ଏହି ସ୍ତମ୍ଭ କାଳକ୍ରମେ ଭୂମିସାତ୍ ହୋଇଥିଲା । କେତେକ ସମୟ ପରେ ଜାହାଙ୍ଗିର ବାଦ୍‌ସାହାଙ୍କ ଦ୍ୱାରା ପୁନରୁତ୍ଥିତ ହେଲା । ଉକ୍ତ ବାଦସାହାଙ୍କ ରାଜତ୍ୱ ସମୟର ଘଟଣାବଳି ମଧ୍ୟ ସ୍ତମ୍ଭଗାତ୍ରରେ ଲେଖା ହୋଇଅଛି ।

ଅଲୋପି ମାତା ପ୍ରୟାଗର ପୀଠଦେବୀ ଅଟନ୍ତି । ମନ୍ଦିରମଧ୍ୟରେ ଦେବୀଙ୍କର କୌଣସି ମୂର୍ତ୍ତି ଦେଖାଯାଏନାହିଁ । ମର୍ମ୍ମରପ୍ରସ୍ତରନିର୍ମ୍ମିତ

ଏକ ବେଦୀର ମଧ୍ୟସ୍ଥଳରେ ଏକଫୁଟ ଭୂଜଯୁକ୍ତ ଚତୁଷ୍କୋଣାକାର ଗର୍ତ୍ତ ଅଛି । ଦେବୀଯନ୍ତ୍ର ଗର୍ତ୍ତମଧ୍ୟରେ ସ୍ଥାପିତ ହୋଇଅଛି । ଗର୍ତ୍ତର ଉପରି-ଭାଗରେ ଦେବୀଙ୍କର ଆସନରୂପେ କଳ୍ପିତ ଏକ କ୍ଷୁଦ୍ର ଦୋଳି ଦୋଦୁଲ୍ୟମାନ ହେଉଅଛି ।

ଆଲ୍ଲାହାବାଦର ବର୍ତ୍ତମାନ ପରିଦୃଶ୍ୟମାନ ସହର ସିପାହୀବିଦ୍ରୋହର କେତେକ ସମୟ ପରେ ନିର୍ମିତ ହୋଇଥିଲା । ସହରମଧ୍ୟରେ ଲାଟ୍-ଭବନ, ହାଇକୋର୍ଟ, ଡାକ୍ ଅଫିସ, ମ୍ୟୁର କଲେଜ, ଆଲଫ୍ରେଡ଼ ପାର୍କାଦି ମନୋରମ ପ୍ରାସାଦସମୂହ ଅଛି ।

ଭାରତସମ୍ରାଟ୍ ସପ୍ତମ ଏଡ୍‌ୱାର୍ଡଙ୍କ କନିଷ୍ଠ ଭ୍ରାତା ଡ୍ୟୁକ୍ ଅଫ୍ ଏଡ଼ିନବରାଙ୍କ ଭାରତାଗମନ ଘଟଣା ସ୍ମରଣାର୍ଥେ ଆଲ୍‌ଫ୍ରେଡ୍ ପାର୍କର ପ୍ରତିଷ୍ଠା ହୁଏ । ମନୋହର ଉଦ୍ୟାନ ମଧ୍ୟସ୍ଥିତ ଏକ ସିଂହାସନ ଉପରେ ମହାରାଣୀ ଭିକ୍ଟୋରିଆଙ୍କ ପ୍ରସ୍ତରମୂର୍ତ୍ତି ସ୍ଥାପିତ ହୋଇଅଛି । ମ୍ୟୁରସ କଲେଜ ଗୃହ ପାର୍କସମ୍ମୁଖରେ ଅବସ୍ଥିତ । ରାଜା ମହାରାଜାମାନଙ୍କ ପ୍ରଦତ୍ତ ମୁଦ୍ରା ସାହାଯ୍ୟରେ କଲେଜ ଗୃହ ନିର୍ମିତ ହୋଇଥିଲା । ଏହା ମଧ୍ୟରେ ଇଉନିଭରସିଟ୍ ହଲ ନାମଧେୟ ଏକ ସୁବୃହତ୍ କକ୍ଷ ଅଛି ।

ସହରମଧ୍ୟରେ ଆକବର ବାଦ୍‌ସାହା ଏକ ସୁରମ୍ୟ ଉଦ୍ୟାନ ସ୍ଥାପନ କରିଥିଲେ । ଏହାର ଚତୁର୍ଦ୍ଦିଗ ପ୍ରସ୍ତରପ୍ରାଚୀରଦ୍ୱାରା ବେଷ୍ଟିତ । ଜାହାଙ୍ଗିରଙ୍କ ପୁତ୍ର ଖସ୍ରୁ ଦିଲ୍ଲୀସିଂହାସନ ପ୍ରାପ୍ତି ଆଶାରେ ପିତାଙ୍କ ବିରୁଦ୍ଧେ ଯୁଦ୍ଧ ଘୋଷଣା କଲେ । କେତେକ ବର୍ଷ ଯୁଦ୍ଧ ଚାଲିଲା ପରେ ଅବଶେଷରେ ପରାସ୍ତ ହୋଇ ଏହି ଉଦ୍ୟାନ ମଧ୍ୟସ୍ଥିତ ଏକ ଗୃହରେ ବନ୍ଦୀ ହୋଇଥିଲେ । ୧୬୨୧ ଖ୍ରୀଷ୍ଟାବ୍ଦରେ ତାହାଙ୍କର ମୃତ୍ୟୁ ହେଲା । ତାହାଙ୍କ ନାମାନୁସାରେ ଉଦ୍ୟାନର ନାମ ଖସ୍ରୁବାଗ୍ ହୋଇଅଛି । ଏହା ମଧ୍ୟସ୍ଥିତ ତିନିଗୋଟି ପ୍ରକୋଷ୍ଠ ମଧ୍ୟରୁ ଏକ ପ୍ରକୋଷ୍ଠରେ ସୁଲତାନ୍ ଖସ୍ରୁଙ୍କର, ଦ୍ୱିତୀୟ ପ୍ରକୋଷ୍ଠରେ ତାହାଙ୍କ ମାତାଙ୍କର ଓ ତୃତୀୟ ପ୍ରକୋଷ୍ଠରେ ଜାହାଙ୍ଗିରଙ୍କ

ପତ୍ନୀ ସାହେବା ବେଗମଙ୍କର ଓ ନୂର୍‌ଜାହାନଙ୍କ ସମାଧି ସ୍ଥାପିତ ହୋଇଅଛି ।

ଯମୁନାଙ୍କ ବକ୍ଷୋପରେ ନିର୍ମିତ ରେଲଓଏ ସେତୁର ନିର୍ମାଣ କୌଶଳ ଦେଖି ଚମତ୍କୃତ ହେବାକୁ ହୁଏ । ଏହାର ଦୈର୍ଘ୍ୟ ୩୨୨୪ ଫୁଟ, ପ୍ରସ୍ଥ ୧୦୦ ଫୁଟ ଉଚ୍ଚତା ତଦ୍ଧିରୁ କିଛି କମ୍ ହେବ । ସେତୁ ଦୁଇ ପ୍ରସ୍ଥ ହୋଇ ତିଆର ହୋଇଅଛି । ଉପର ପ୍ରସ୍ଥ ଦୁଇ ଭାଗରେ ବିଭକ୍ତ । ଏକଭାଗ ଯିବା ସକାଶେ ଓ ଅନ୍ୟଭାଗ ଆସିବା ସକାଶେ ନିର୍ଦ୍ଦିଷ୍ଟ ହୋଇଅଛି । ତଳ ପ୍ରସ୍ଥ ଚାରିଭାଗ ହୋଇଅଛି । ଶେଷ ଦୁଇଭାଗରୁ ଏକଭାଗ ଦେଇ ଲୋକମାନେ ଯାଆନ୍ତି ଓ ଅନ୍ୟଭାଗ ଦେଇ ଆସନ୍ତି । ମଧ୍ୟ ଦୁଇଭାଗରେ ଉଷ୍ଟ୍ର, ଘୋଡ଼ା ଓ ଗୋରୁ ଗାଡ଼ୀସବୁ ଯାତାୟାତ କରୁଅଛି ।

୧୯୨୨ ମସିହା ନଭେମ୍ବର ମାସ ୭ ତାରିଖରେ ଆମ୍ଭେମାନେ ଦ୍ୱିତୀୟ ବାର ଆଲ୍ଲାହାବାଦରେ ପନ୍ଦ୍ରହ ଦିବସ ରହିଥିଲୁଁ ।

---

## ବିନ୍ଧ୍ୟାଚଳ ।

ଅକ୍ଟୋବର ମାସ ୨୮ ତାରିଖ ସକାଳେ ଆମ୍ଭେମାନେ ପ୍ରୟାଗରୁ ବିନ୍ଧ୍ୟାଚଳ ଯାତ୍ରା କଲୁଁ । ଇଲ୍ଲାହାବାଦଠାରୁ ଦୂରତା ୫୧ ମାଇଲ । ଷ୍ଟେସନଠାରୁ ଏକ ମାଇଲ ଦୂରବର୍ତ୍ତୀ ପର୍ବତର ସମତଳ ଭୂମି ଉପରେ ମନ୍ଦିର ଅବସ୍ଥିତ । ନିକଟରେ ଗଙ୍ଗାଦେବୀ ପ୍ରବାହିତା । ମନ୍ଦିରର ଏକ କକ୍ଷରେ ସିଂହବାହିନୀ ଅଷ୍ଟଭୁଜା ବିନ୍ଧ୍ୟବାସିନୀ ଦେବୀ ବିରାଜମାନା । ଅନ୍ୟ ଏକ କକ୍ଷରେ ଶ୍ରୀମହାଦେବ ପ୍ରତିଷ୍ଠିତ ହୋଇଅଛନ୍ତି । ଦୁହିଙ୍କ ମଧ୍ୟରେ ଏକ ପ୍ରାଙ୍ଗଣ ଅଛି । ତହିଁରେ ଭକ୍ତବୃନ୍ଦ ସମବେତ ହୋଇ ଚଣ୍ଡୀ ପାଠ କରୁଅଛନ୍ତି । ଅଧିକାଂଶ ସମୟରେ ଛାଗଗଣର ବଳିଦାନ ଉକ୍ତ ଦେବୀଙ୍କ ସମ୍ମୁଖରେ ହେଉଅଛି । ଶୁଣାଯାଏ ଛାଗଗଣର ବଳିଯୋଗ୍ୟ

ତଥିତାର ଶାସ୍ତ୍ରୋକ୍ତ ଏଠାରେ ଅବମାନନା କରାହେଉଅଛି । ଭଗବତୀ ଶ୍ରୀ ମହାଦେବଙ୍କ ସମ୍ମୁଖରେ ବଳିଦାନ ପ୍ରଥା କଦାପି ଗର୍ହଣୀୟ ଅଟେ । ବନ୍ଧ୍ୟାମାନେ ଶିଶୁପୁଅ ବଳି ଦାନରେ ପରିତୁଷ୍ଟ ହେବାର ପଣ୍ଡାମାନେ ପ୍ରକାଶ କରନ୍ତି । ମନ୍ଦିର ନିକଟରେ ପଣ୍ଡା ଓ ଅନ୍ୟାନ୍ୟ ଲୋକମାନଙ୍କ ବାସଭବନ ଅଛି । ଏହା ଏକ କ୍ଷୁଦ୍ର ଗ୍ରାମ ଅଟେ । ଗଙ୍ଗାଙ୍କ କୂଳରେ ପ୍ରସ୍ତର ପାବଚ୍ଛନ୍ନ ଏକ ସ୍ନାନ ଘାଟ ଅଛି । ଯାତ୍ରୀମାନେ ଏଠାରେ ସ୍ନାନ ଓ ତର୍ପଣ କରନ୍ତି ।



ବିନ୍ଧ୍ୟାଚଳଠାରୁ ସୁଦୂରବର୍ତ୍ତୀ ଏକ ଉଚ୍ଚ ପର୍ବତ ଶୃଙ୍ଗରେ ଅଷ୍ଟଭୁଜା ମହିଷମର୍ଦ୍ଦିନୀ ଯୋଗମାୟା ବିରାଜମାନ କରିଅଛନ୍ତି । ଯୋଗମାୟା ଶ୍ରୀ ଭଗବାନଙ୍କ ଆଦେଶାନୁସାରେ ନନ୍ଦଜାୟା ଯଶୋଦା ଦେବୀଙ୍କ ଗର୍ଭରେ ଆବିର୍ଭୂତା ହୋଇଥିଲେ । ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ପ୍ରକଟ ହେବା ପରେ ବସୁଦେବ ତାହାଙ୍କୁ ନେଇ ଯଶୋଦାଙ୍କ କୋଡ଼ରେ ସ୍ଥାପନ କରି ସଦ୍ୟୋଜାତା କନ୍ୟା ଯୋଗମାୟାଙ୍କୁ ଆଣି ଦେବକୀଙ୍କ କୋଡ଼ରେ ସ୍ଥାପନ କଲେ । ମାୟାଦେବୀଙ୍କ ପ୍ରଭାବରୁ କଂସ-କାରାଗାରର ରକ୍ଷକବୃନ୍ଦ ଓ ଗୋକୁଳବାସୀ ଲୋକମାନେ ନିଦ୍ରାଭିଭୂତ ହୋଇ କୌଣସି ଘଟଣା ଜାଣି-ପାରିଲେନାହିଁ । ଶେଷ ରାତ୍ରରେ କଂସ ଦ୍ୱାରପାଳଙ୍କ ମୁଖରୁ ଦେବକୀଙ୍କର ପ୍ରସବ ବାର୍ତ୍ତା ଶ୍ରବଣ କରି ଉଦ୍ବିଗ୍ନ ଶୀଘ୍ର ଓ ଦ୍ରୁତ ପଦରେ କାରାଗୃହକୁ ଆସି ଦେବକୀଙ୍କ କୋଡ଼ରୁ କନ୍ୟାଙ୍କୁ ବଳପୂର୍ବକ ଗ୍ରହଣ କରି ଶିଳା ଉପରେ ନିକ୍ଷେପ କରିବା ସମୟରେ ହସ୍ତଚ୍ୟୁତା ଦେବୀ କଂସର ମସ୍ତକରେ ପଦ ଦେଇ ଆକାଶରେ ଆବିର୍ଭୂତା ହେଲେ । ତାହାଙ୍କର ଅଷ୍ଟଭୁଜ ଧନୁ, ଶର, ଅସି, ଚର୍ମ, ଖଡ୍ଗ, ଶଙ୍ଖ, ଚକ୍ର ଓ ଗଦାଦ୍ୱାରା ବିଭୂଷିତ ହୋଇଥିଲା । "ତୁମ୍ଭର ଶତ୍ରୁ ଅନ୍ୟତ୍ର ଜନ୍ମ ଗ୍ରହଣ କରିଅଛି" ଏହି ସମ୍ବାଦ କଂସକୁ ଦେଇ ଦେବୀ ସୁରଲୋକକୁ ଗମନ କଲେ । ଇନ୍ଦ୍ର ତାହାଙ୍କୁ ଭଗ୍ନୀରୂପେ ଗ୍ରହଣ କରି ନଗଶ୍ରେଷ୍ଠ ବିନ୍ଧ୍ୟାଚଳରେ ସ୍ଥାନ ଦେଲେ । ପୃଥିବୀର ନାନା ସ୍ଥାନରେ ବହୁ ନାମ ଧାରଣ କରି ଦେବୀ ପୂଜା ପାଉଅଛନ୍ତି ।